ଏଡ଼ୁ

# ବାଲ୍ମୀକି

ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. ପ୍ରଣୀତ

# Valmiki

BY

RAMACHANDRA ACHARYA [illegible]

[illegible]

PUBLISHED BY

The Students' Store

BERHAMPUR

1931

As 12.

# କ୍ଲାସ ପାଇଁ ପୁସ୍ତକାବଳୀ

| | | | |
|---|---|---|---|
| | ୧ମ ଭାଗ—'ଅକ୍ଷର ପରିଚୟ' | (୧ମ ଶ୍ରେଣୀ ପାଇଁ) | ଟ ० ⁄ |
| | ୨ୟ ,, | (୨ୟ ,, ,,) | ଟ ०⁄ |
| | ୩ୟ ,, | (୩ୟ ,, ,,) | ଟ ० ⁄⁄ |
| | ...ଲ ସାହିତ୍ୟ ୧ମ ସୋପାନ | (୪ର୍ଥ ,, ,,) | ଟ ० । |
| | ,, ୨ୟ ସୋପାନ | (୫ମ ,, ,,) | ଟ ० ।⁄ |
| | ,, ୩ୟ ,, | (୬ଷ୍ଠ ,, ,,) | ଟ ०।⁄ |
| ୭ | ,, ୪ର୍ଥ ,, | (୭ମ ,, ,,) | ଟ ० ॥ |
| ୮ | ପ୍ରାଥମିକ ଅଙ୍କଶିକ୍ଷା ୧ମ ଭାଗ | (୧ମ ,, ,,) | ଟ ० ⁄ |
| ୯ | ,, ,, ୨ୟ ,, | (୨ୟ ,, ,,) | ଟ ० ⁄⁄ |
| ୧୦ | ,, ,, ୩ୟ ,, | (୩ୟ ,, ,,) | ଟ ० ⁄ |
| ୧୧ | ,, ,, ୪ର୍ଥ ,, | (୪ର୍ଥ ,, ,,) | ଟ ० ⁄ |
| ୧୨ | ,, ,, ୫ମ ,, | (୫ମ ,, ,,) | ଟ ० ⁄⁄ |
| ୧୩ | ପୁରାଣ କଥା (ପ୍ରଥମ ଭାଗ) | ଜନୈକ ଶିକ୍ଷକ | ଟ ० ⁄ |
| ୧୪ | ,, (ଦ୍ୱିତୀୟ ,,) | ,, | ଟ ० ⁄୬ |
| ୧୫ | ,, (ତୃତୀୟ ,,) | ,, | ଟ ० ⁄⁄ |
| ୧୬ | ସହଜ ଗଣିତ ଶିକ୍ଷା (୪ର୍ଥ ଶ୍ରେଣୀ ପାଇଁ) | | ଟ ० ।⁄ |
| ୧୭ | (୫ମ ,, ,,) | ,, ,, | ଟ ० ⁄ |
| ୧୮ | ଓଡ଼ିଆ ରାମାୟଣ | ଶ୍ରୀ ଦାମୋଦର ମିଶ୍ର | ଟ ।⁄ |
| ୧୯ | ଓଡ଼ିଆ ମହାଭାରତ | ଶ୍ରୀ ଗୋଦାବରୀଶ ମହାପାତ୍ର | ଟ ०⁄⁄ |
| ୨୦ | ଭକ୍ତି-ଗୀତିକା (ଈଶ୍ୱରଭକ୍ତି, ପିତୃମାତୃଭକ୍ତି, ଗୁରୁଭକ୍ତି ଇତ୍ୟାଦି କବିତା ଓ ସଂଗୀତ—୧ମ ଶ୍ରେଣୀ ଠାରୁ ୫ମ ଶ୍ରେଣୀ ପାଇଁ) | | ଟ० ⁄୬ |

ଷ୍ଟୁଡେଣ୍ଟସ୍ ଷ୍ଟୋର
ବ୍ରହ୍ମପୁର, ଗଞ୍ଜାମ

# ଶ୍ରୀଯୁକ୍ତ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ. ପ୍ରଣୀତ

## ପୁସ୍ତକାବଳୀ

### ଉପନ୍ୟାସ

| | | | |
|---|---|---|---|
| ୧ | ପ୍ରଣୟପ୍ରବାହ | (କାଦମ୍ବରୀ) | ଟ ୧। |
| ୨ | ଅଗ୍ନିଶିଖା | (ପୌରାଣିକ) | ଯନ୍ତ୍ରସ୍ଥ |
| ୩ | କନକସୁନ୍ଦରୀ | (ଐତିହାସିକ) | ,, |
| ୪ | କମଳକୁମାରୀ | ,, | ଟ ୧ ୳ |
| ୫ | ପଦ୍ମିନୀ | ,, | ଟ ୦ ୴ |
| ୬ | ବୀର ଓଡ଼ିଆ | ,, | ଟ ୧। |
| ୭ | ବାଲ୍ମୀକି | (ପୌରାଣିକ) | ଟ ୦ ୴ |

### ଗଳ୍ପ ଓ ଜୀବନୀ

| | | | |
|---|---|---|---|
| ୮ | ମାର୍କଣ୍ଡେୟ | | ଟ ୦। |
| ୯ | ଅନସୂୟା | | ଟ ୦ ୳ |
| ୧୦ | ଶିଶୁଭକ୍ତ | | ଟ ୦ ୳ |
| ୧୧ | ହିତକଥା | ପ୍ରଥମ ଭାଗ (ମିତ୍ରଲାଭ) | ଟ ୦ ।୵ |
| ୧୨ | ,, | ଦ୍ୱିତୀୟ ଭାଗ (ସୁହୃଦ୍‌ଭେଦ) | ଟ ୦ ୳ |
| ୧୩ | ,, | ତୃତୀୟ ଭାଗ (ବିଗ୍ରହ) | ଟ ୦ ୳ |
| ୧୪ | ,, | ଚତୁର୍ଥ ଭାଗ (ସନ୍ଧି) | ଯନ୍ତ୍ରସ୍ଥ |
| ୧୫ | ବେତାଳ କଥା | | ଟ ୦ ୳୵ |
| ୧୬ | Stories from Betalpanchavinsati | | Re 0-3-0 |

### ନାଟକ ଓ ପ୍ରହସନ

| | | | |
|---|---|---|---|
| ୧୭ | ମନ୍ତ୍ରପଣା (ସାମାଜିକ ପ୍ରହସନ) | | ଟ ୦। |

୧୮ ମଠରହସ୍ୟ (ସାମାଜିକ ପ୍ରହସନ) }
୧୯ ଶିକ୍ଷିତା ( ,, ) } ପ୍ରକାଶିତ ହେବ
୨୦ ଷାହୁକା-ପୂଜା (ପୌରାଣିକ ନାଟକ) ,,
୨୧ ପରିବର୍ତ୍ତନ (ଏକାଙ୍କ ନାଟକ) ଟ ୦ ୶

## ସାହିତ୍ୟ (ପାଠ୍ୟ)

୨୨ ସାହିତ୍ୟାଙ୍କୁର (ପ୍ରଥମ ଭାଗ) ଅକ୍ଷରପରିଚୟ ଟ ୦ ୶
୨୩ ,, ଦ୍ୱିତୀୟ ଭାଗ ଟ ୦ ୶
୨୪ ,, ତୃତୀୟ ଭାଗ ଟ ୦ [illegible]
୨୫ ସରଳ ସାହିତ୍ୟ ପ୍ରଥମ ସୋପାନ ଟ ୦ [redacted]
୨୬ ,, ତୃତୀୟ ସୋପାନ ଟ ୦ ।୶
୨୭ ,, ଚତୁର୍ଥ ସୋପାନ ଟ ୦ ୳
୨୮ ଭକ୍ତିଗୀତିକା ଟ ୦୶୬

## ଭୂଗୋଳ (ପାଠ୍ୟ)

୨୯ ଭୂଗୋଳ ଶିକ୍ଷା ପ୍ରଥମ ଭାଗ ଟ ୦ ।୶
୩୦ ,, ଦ୍ୱିତୀୟ ଭାଗ ଟ ୦ ୳
୩୧ ,, ତୃତୀୟ ଭାଗ ଟ ୦ ୳୶

## ଅନ୍ୟାନ୍ୟ

୩୨ Acharya's Concise English-English—
Oriya Dictionary Rs 3-0-0
୩୩ ସ୍ୱାସ୍ଥ୍ୟ ସୋପାନ ଟ ୦ ୴ ୦
୩୪ ପତ୍ର ଲିଖନ }
୩୫ ରୂପକବ୍ୟାମାପୂର୍ଣ } ପ୍ରକାଶିତ ହେବ





## ସୂଚନା

ରାମାୟଣ ଆମ ଦେଶର ମହା ପୁରାଣ, ମହା କାବ୍ୟ । ରାମାୟଣ ଭାରତର ଗର୍ବର ଜିନିଷ, ଆଦରର ଧନ—ହିନ୍ଦୁ ଜାତିର ପୂଜାର ସାମଗ୍ରୀ, ଭକ୍ତିର ଗ୍ରନ୍ଥ । ଏପରି ଉତ୍କୃଷ୍ଟ କାବ୍ୟ, ସୁନ୍ଦର ରଚନା ଜଗତର ଅନ୍ୟ କୌଣସି ଭାଷାରେ ଦେଖିବାକୁ ମିଳେ ନାହିଁ । ଅତି ପ୍ରାଚୀନ ଯୁଗରେ ବେଦ, ଉପନିଷଦ୍ ଲେଖା ଯାଇ ଥିଲା । ସେ ସବୁ କବିତାମୟ ହେଲେହେଁ ପଦ୍ୟରେ ରଚିତ ନୁହେଁ, ଗଦ୍ୟରେ । ରାମାୟଣ ସର୍ବ ପ୍ରଥମ, ବୃହତ୍ତମ ପଦ୍ୟ ଗ୍ରନ୍ଥ, ଆଦି କାବ୍ୟ । ହିନ୍ଦୁ ଧର୍ମର ପ୍ରତ୍ୟେକ ସମ୍ପ୍ରଦାୟ ରାମାୟଣକୁ ନିଜର କରି ନେଇଛନ୍ତି । ବୈଷ୍ଣବମାନେ କହନ୍ତି, ରାମଚନ୍ଦ୍ର ସ୍ୱୟଂ ବିଷ୍ଣୁ ଅବତାର । ରାମଚନ୍ଦ୍ର ଶୈବ ମତରେ ପାର୍ବତୀ ଦେବୀଙ୍କର, ଶାକ୍ତର ବିବେଚନାରେ ଶକ୍ତିଙ୍କର ଅଖଣ୍ଡ ଅବତାର । ଅଦ୍ୱୈତମତାବଲମ୍ବୀ ହିନ୍ଦୁ ରାମାୟଣକୁ ମାୟାବାଦ ମନେ କରିଥାଏ । ବିଶିଷ୍ଟାଦ୍ୱୈତର ବିଶ୍ୱାସ, ରାମାୟଣ ଭକ୍ତି ରାଜ୍ୟର ସର୍ବୋତ୍କୃଷ୍ଟ ପନ୍ଥା । ଦ୍ୱୈତବାଦୀ ଦ୍ୱାରା ପରମ ଭକ୍ତ ହନୁମାନ ରାମାୟଣ ଚରିତର କେନ୍ଦ୍ର ରୂପେ ବିବେଚିତ । ହନୁମାନ ମାନବ ଓ ଦେବତାଙ୍କ ମଧ୍ୟବର୍ତ୍ତୀ ଜୀବ ବୋଲି ଦ୍ୱୈତର ଧାରଣା । ରାମାୟଣର ଶିକ୍ଷା, ଉପଦେଶ ହିନ୍ଦୁ ଜାତିର ଅସ୍ଥିମଜ୍ଜାଗତ— ରାମାୟଣର ଆଦର୍ଶ ହିନ୍ଦୁର ପ୍ରତି ରକ୍ତ ବିନ୍ଦୁରେ ନିହିତ । ମନ ସନ୍ଦେହରେ

ଥର ହର ହେଲେ, ହୃଦୟ ବିଷାଦରେ ବିଚଳିତ ହୋଇ ପଡ଼ିଲେ, ଧାର୍ମିକ ନିଷ୍ଠାପର ହିନ୍ଦୁ ରାମାୟଣ ପାଠ କରେ ଶାନ୍ତି, ସାନ୍ତ୍ୱନା ପାଇବା ପାଇଁ । ରାମାୟଣ ତାହାର ଯେପରି ବନ୍ଧୁ, ଉପଦେଷ୍ଟା, ପଥପ୍ରଦର୍ଶକ । ପ୍ରତିଦିନ ଲକ୍ଷ ଲକ୍ଷ ନୈଷ୍ଠିକ ହିନ୍ଦୁ ନିୟମିତ ଭାବରେ ଧର୍ମଗ୍ରନ୍ଥରୂପେ ରାମାୟଣ ପଢ଼ି ଥାନ୍ତି । ରାମାୟଣ ଅନେକ ଭକ୍ତଙ୍କର ସମ୍ପୂର୍ଣ୍ଣ କଣ୍ଠସ୍ଥ । ଜଗତର ଶ୍ରେଷ୍ଠ ସମ୍ପଦ, ଭାରତର ଅମୂଲ୍ୟ ନିଧି, ହିନ୍ଦୁ ଜାତିର ଆଦି କାବ୍ୟ ରାମାୟଣ ମହାମୁନି ବାଲ୍ମୀକିଙ୍କର ରଚନା ।



# ପ୍ରଥମ ଭାଗ

## ପତନ

୧

ଅଯୋଧ୍ୟା ନଗରୀର ଦକ୍ଷିଣ ଭାଗରେ ଗଙ୍ଗା ନଦୀ ପ୍ରବାହିତ । ଗଙ୍ଗାର ଦକ୍ଷିଣ ତୀରରୁ ଭୟଙ୍କର ଅରଣ୍ୟର ଆରମ୍ଭ । ଏହି ବନବିଭାଗ ଥିଲା ଅନାର୍ଯ୍ୟ ଜାତିର ବାସ ସ୍ଥାନ । ଏ ବନ ମଧ୍ୟରେ ତମସା ନଦୀ ବହି ଯାଉଥିଲା । ତମସା ତୀରରେ ପ୍ରାଚୀନ ଋଷି ଚ୍ୟବନଙ୍କ ଆଶ୍ରମ । ଜଗତ-ପ୍ରସିଦ୍ଧ ରାମାୟଣ-ପ୍ରଣେତା ଥିଲେ ଚ୍ୟବନଙ୍କ ପୁତ୍ର । ଏହି ତମସା ତୀରସ୍ଥ ଆଶ୍ରମରେ ବସି ମହର୍ଷି ବାଲ୍ମୀକ ତାଙ୍କର ଅମର କାବ୍ୟ ଲେଖିଥିଲେ ।

ଥରେ ବୃଦ୍ଧ ଚ୍ୟବନ ଘୋର ଅରଣ୍ୟ ମଧ୍ୟରେ ଅନେକ ଦିନ ଠାଣି ତପସ୍ୟା କରିଥିଲେ । ଏକ ମନ ଏକ ପ୍ରାଣରେ ସେ ଏପରି ଗାଢ଼, ଅଟଳ ତପସ୍ୟାରେ ବୁଡ଼ି ରହିଲେ ଯେ, ତାଙ୍କର ସମସ୍ତ ଶରୀର ଉଇ ହୁଙ୍କାରେ ଢାକି ହୋଇଗଲା— ଦୁଇ ଚକ୍ଷୁ ମାତ୍ର ସ୍ପଷ୍ଟ ଦେଖା ଯାଉ ଥିଲା । ଦିନେ ସୁକନ୍ୟା ନାମରେ ଜଣେ ରାଜକନ୍ୟା ବନବିହାର କରୁ କରୁ ସେ ସ୍ଥାନରେ ପହଞ୍ଚିଲେ । ଉଇ ହୁଙ୍କା ନିକଟକୁ ଯାଇ, ସେଥିରେ ଦୁଇ ଗୋଟି ଉଜ୍ଜ୍ୱଳ ବିନ୍ଦୁ ଦେଖି ତାଙ୍କ ମନରେ କୌତୂହଳ ଜାତ ହେଲା । ସେ ଗୋଟିଏ କଣ୍ଟକରେ ହୁଙ୍କାର ସେ ଦୁଇ ଉଜ୍ଜ୍ୱଳ ଅଂଶ ଫୋଡ଼ି ଦେଲେ । ଚକ୍ଷୁ ନଷ୍ଟ ହେବାରୁ ଚ୍ୟବନ ରାଗରେ ତମ ତମ ହୋଇ ଶାପ ଦେଇ ପକାଇଲେ । ବଲ୍ମୀକ ଭିତରୁ ମନୁଷ୍ୟ କଣ୍ଠସ୍ୱର ଶୁଣି, ଚକ୍ଷୁ-ରନ୍ଧ୍ରରେ ବଲ୍ମୀକ ଭିଜି ଯିବାର ଦେଖି ସୁକନ୍ୟା ଠଉରାଇ ପାରିଲେ ଯେ,

ତହିଁ ଉପରେ ଜଣେ ମୁନି ବସିଛନ୍ତି । ନ ଜାଣି ଋଷିଙ୍କ ଆଖି ଫୋଡ଼ିଛନ୍ତି, କରିବେ କଣ— ମହା ଦୁଃଖରେ କାନ୍ଦି କାନ୍ଦି ପ୍ରଣାମ କରି ଋଷିଙ୍କ ନିକଟରେ କ୍ଷମା ଭିକ୍ଷା କଲେ । ମୁନି କିନ୍ତୁ ଶୁଣିଲେ ନାହିଁ ।

ଏଣେ ଚ୍ୟବନଙ୍କ ଶାପରେ ସୁକନ୍ୟାଙ୍କ ନଗରର ମନୁଷ୍ୟ, ପଶୁ, ପକ୍ଷୀ ସମସ୍ତ ଜୀବ କିନ୍ତୁ ଆଉ ମଳ ମୂତ୍ର ତ୍ୟାଗ କରି ପାରିଲେ ନାହିଁ । ସମସ୍ତଙ୍କ ପେଟ ଫାମ୍ପି ଉଠିଲା । ଏହାର କାରଣ ବୁଝି ନ ପାରି ନଗରର ରାଜା, ମନ୍ତ୍ରୀ, ନଗରବାସିମାନେ ଅସ୍ଥିର୍ନ୍ଧ୍ୟ ହୋଇ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । ରାଜା ପ୍ରମାଦ ଗଣିଲେ । ଠିକ୍ ସେତିକିବେଳକୁ ରାଜକନ୍ୟା ହତାଶ ହୋଇ ମଳିନ ମୁଖରେ ନଗରକୁ ବାହୁଡ଼ି ରାଜାଙ୍କୁ ମୁନିଙ୍କ ଶାପ କଥା ଜଣାଇଲେ । ରାଜା ବୁଝିଲେ, ସେଇ ଶାପ ପ୍ରଭାବରେହିଁ ଲୋକଙ୍କର ଏ ଶୋଚନୀୟ ଅବସ୍ଥା । ସେ ଆଉ ବିଳମ୍ବ ନ କରି ମନ୍ତ୍ରୀ ଓ କନ୍ୟାଙ୍କ ସଙ୍ଗେ ଋଷିଙ୍କ ନିକଟକୁ ଗଲେ । ଶାପ ପ୍ରତ୍ୟାହାର କରିବା କାରଣ ସେ ମୁନିଙ୍କି ପ୍ରାର୍ଥନା କଲେ । ମୁନି କହିଲେ— "ଶାପ ପ୍ରତ୍ୟାହାର କରିବି— ତେବେ ଗୋଟିଏ ସର୍ତ୍ତରେ । ମୋ ସଙ୍ଗେ ରାଜକନ୍ୟାର ବିବାହ ଦେବାକୁ ହେବ । ଏ ସର୍ତ୍ତ ନ ପାଳିଲେ ଚ୍ୟବନର କ୍ରୋଧ ଶାନ୍ତ ହେବାର ନୁହେ ।"

'ଚ୍ୟବନ' ନାମ ଶୁଣିବା ମାତ୍ରକେ ସମସ୍ତେ ଚମକିତ ହେଲେ । ରାଜା କରିବେ କଣ— ଶାପରୁ ମୁକ୍ତ ହେବାର ତ ଅନ୍ୟ ଉପାୟ ନାହିଁ । ସେ ଚ୍ୟବନଙ୍କ କଥାରେ ଅଗତ୍ୟା ଅଙ୍ଗୀକୃତ ହେଲେ । ତାଙ୍କର ଆଶା-ସନା, ବିଖ୍ୟାତ ଋଷି ଚ୍ୟବନ ଜାମାତା ହେବେ । ସୁକନ୍ୟା କିଛି ଆପତ୍ତି କଲେ ନାହିଁ । ମୁନିପତ୍ନୀ ହେବେ ବୋଲି ବରଂ ସେ ଆନନ୍ଦ, ଅଶାସନାରେ ଅଧୀର ହୋଇଗଲେ । ସୁକନ୍ୟା ବାସ୍ତବିକ ସୁ-କନ୍ୟା । ରାଜା ଓ ତାଙ୍କ

ନଗରର ଜୀବଜନ୍ତୁଗଣ ତାପରୁ ମୁକ୍ତି ପାଇଲେ । ରଜା ଉତ୍କଣ୍ଠା ଭିତରୁ ଋଷିଙ୍କି ବାହାର କରି ତାଙ୍କ ହାତରେ କନ୍ୟା ସମର୍ପଣ କରି ନଗରକୁ ପ୍ରତ୍ୟାବୃତ୍ତ ହେଲେ ।

ପରମ ପତିବ୍ରତା ସୁକନ୍ୟା ବୃଦ୍ଧ ପତି ଚ୍ୟବନଙ୍କ ସେବା ଶୁଶ୍ରୂଷାରେ ଦିନ କଟାଇବାକୁ ଲାଗିଲେ । ଦିନେ ଚ୍ୟବନ ସ୍ନାନ କରି ଯାଇଛନ୍ତି— ଆଶ୍ରମରେ ସୁକନ୍ୟା ଏକାକିନୀ, ଏହି ସମୟରେ ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାର ସେଠାରେ ପହଞ୍ଚିଲେ । ପୂର୍ଣ୍ଣଯୌବନା ସୁକନ୍ୟାଙ୍କ ରୂପରେ ସେ ଦୁହେଁ ମୋହିତ ହୋଇ କହିଲେ— "ସୁକନ୍ୟା ! ଚ୍ୟବନ ବୃଦ୍ଧ ହୋଇଗଲେଣି, ତାଙ୍କର ପତ୍ନୀ ହୋଇ ତୁମର ଲାଭ କଣ ? ଯୌବନ, ସୌନ୍ଦର୍ଯ୍ୟ ବୃଥା ଯିବ କିନା ! ତାଙ୍କୁ ଛାଡ଼ି ଆମ ଦୁହିଁଙ୍କି ପତିରୂପେ ବରଣ କର—କରି ସୁଖିନୀ ହୁଅ, ଆମମାନଙ୍କୁ ସୁଖୀ କର ।"

ସାଧ୍ୱୀ ସୁକନ୍ୟା ଏହା ସହୁଛନ୍ତି କେତେବେଳେ ? ପ୍ରଚଣ୍ଡ ରାଗରେ ଜଳି ଉଠିଲେ, ଗାଳି ଦେଇ ସେମାନଙ୍କୁ ଆଶ୍ରମରୁ ଦୂର ହେବାକୁ କହିଲେ । ଅଶ୍ୱିନୀକୁମାର ତାଙ୍କ ସତୀତ୍ୱରେ ସନ୍ତୁଷ୍ଟ ହୋଇ ତାଙ୍କ ହାତରେ ଗୋଟିଏ ଔଷଧ ଦେଇ କହିଲେ ଯେ, ତାହା ସେବନ କଲେ ଚ୍ୟବନ ନବଯୌବନ ଲାଭ କରିବେ । ସେମାନେ ସେଠାରୁ ଚାଲିଯିବାର ଅଳ୍ପ କ୍ଷଣ ପରେ ଚ୍ୟବନ ଆଶ୍ରମକୁ ଫେରିଲେ । ସୁକନ୍ୟା ସେ ଔଷଧ ଜଳରେ ମିଶାଇ ଋଷିଙ୍କୁ ପାନ କରିବାକୁ ଦେଲେ । ପାନ କରିବା କ୍ଷଣି ଚ୍ୟବନ ଯୁବକ ହୋଇଗଲେ । ନିଜ ଶରୀରର ଏ ଆକସ୍ମିକ ପରିବର୍ତ୍ତନରେ ସେ ବିସ୍ମିତ । ସୁକନ୍ୟା ଅଶ୍ୱିନୀକୁମାରଙ୍କ କଥା ଜଣାଇ ତାଙ୍କ ବିସ୍ମୟ ଦୂର କଲେ, ପ୍ରଶଂସା ଆକର୍ଷଣ କଲେ । ଚ୍ୟବନ ପତ୍ନୀଙ୍କ ପାତିବ୍ରତ୍ୟରେ ପରମ ପ୍ରୀତ ହୋଇ ସୁଖରେ କାଳ ଯାପନ କଲେ । ବୈଦ୍ୟ

ଶାସ୍ତ୍ରରେ ଲେଖା ଅଛି, ଯେଉଁ ଔଷଧ ସାହାଯ୍ୟରେ ଚ୍ୟବନ ନୂତନ ଯୌବନ ଲାଭ କରିଥିଲେ, ତାହାହିଁ 'ଚ୍ୟବନ-ପ୍ରାଶ' ନାମରେ ଖ୍ୟାତ । ଚ୍ୟବନଙ୍କ ଔରସରେ, ସୁକନ୍ୟାଙ୍କ ଗର୍ଭରୁ ରତ୍ନାକରଙ୍କ ଜନ୍ମ । ପରେ 'ରତ୍ନାକର' ନାମ 'ବାଲ୍ମୀକି'ରେ ପରିଣତ ହୋଇଥିଲା ।



୨

ଚ୍ୟବନ ତପୋଜ୍ଜ୍ୱଳ ଚକ୍ଷୁ ଦେଇ ସତୀତ୍ୱୋଜ୍ଜ୍ୱଳା ରାଜକୁମାରୀ ସୁକନ୍ୟାଙ୍କୁ ପତ୍ନୀ ରୂପେ ପାଇଛନ୍ତି— କେବଳ ସତୀ ପତ୍ନୀ ନୁହେଁ, ତରୁଣୀ ରୂପବତୀ ପତ୍ନୀଙ୍କର ଅତି ନିଜର ପ୍ରୀତି ସଂପାଦନ ପାଇଁ ନବ ଯୌବନ ପ୍ରାପ୍ତ ହୋଇଅଛନ୍ତି । ଏଣୁ ଋଷି ଓ ଋଷିପତ୍ନୀଙ୍କ ନୂତନ ଜୀବନ ଯେ ସୁଖର, ଆନନ୍ଦର ଏଥିରେ ସନ୍ଦେହ କଣ ? ଦୁହିଁଙ୍କର ସୁଖ ଆନନ୍ଦ ଦୁଇ ଗୁଣ ବଢ଼ି ଥିଲା ସନ୍ତାନଲାଭରେ, ପୁତ୍ର ଜନ୍ମରେ । ଭବିଷ୍ୟତରେ ପୁଅ ଗୁଣରତ୍ନର ଆକର ହେବ ବୋଲି ବୋଧହୁଏ ଚ୍ୟବନ ପୁଅର ନାମ ରଖିଥିଲେ 'ରତ୍ନାକର' ।

ବିଦ୍ୟାଶିକ୍ଷାର ବୟସ ହେବାରୁ ଚ୍ୟବନ ରତ୍ନାକରଙ୍କର ବିଦ୍ୟା-ରମ୍ଭ କରାଇ ନିଜ ଶିଷ୍ୟମାନଙ୍କ ସହିତ ପଢ଼ାଇଲେ । ବାଳକ ରତ୍ନାକର-ଙ୍କର ସରସ ସୁନ୍ଦର ମୁଖମଣ୍ଡଳ, ଦେହର କମନୀୟ କାନ୍ତି ଦେଖି ପିତା-ମାତା, ଅନ୍ୟାନ୍ୟ ଋଷିମାନେ, ନିକଟସ୍ଥ ଅନାର୍ଯ୍ୟପଲ୍ଲୀର ଲୋକେ ପ୍ରୀତ ହେଉଥିଲେ । ବିଦ୍ୟାଧ୍ୟୟନରେ ତାଙ୍କର ଏକାଗ୍ରତା, ପିତୃମାତୃଭକ୍ତି, ଚତୁରତାରେ ସମସ୍ତେ ମୁଗ୍ଧ, [illegible] ଭିଲ୍ଲମାନେ ତାଙ୍କୁ ଆଦରରେ 'ରତନ' ବୋଲି ଡାକନ୍ତି । ରତ୍ନାକର କେବେ କେବେ ସଙ୍ଗୀବାଳକ-ମାନଙ୍କ ସଙ୍ଗେ ଭ୍ରମଣାନନ୍ଦରେ ବନ ମଧ୍ୟରେ, କେବେ ବା ପଲ୍ଲୀ ପ୍ରାନ୍ତରେ ଖେଳା ବୁଲା କରୁଥିଲେ ।

ଆଠ ବର୍ଷ ବୟସରେ ଚ୍ୟବନ ପୁତ୍ରର ଉପନୟନ ସଂସ୍କାର କଲେ । ତାଙ୍କୁ ବେଦ, ଉପନିଷଦ, ଜ୍ୟୋତିଷ ଇତ୍ୟାଦି ଶାସ୍ତ୍ର, ହୋମ, ଯାଗ, ଜପ ଇତ୍ୟାଦି ବ୍ରାହ୍ମଣ କର୍ମ ଶିକ୍ଷା ଦେଲେ । ତାଙ୍କର ଶାସ୍ତ୍ରଜ୍ଞାନ, ବିଦ୍ୟାନୁରାଗ ଦେଖି କେତେକ ଜଣ ଋଷି ରତ୍ନାକରଙ୍କୁ 'ବିଦ୍ୟାଧର' ନାମ ଦେଇଥିଲେ । ଯାଗ ହୋମରେ ରତ୍ନାକର ପିତାଙ୍କର ସହାୟ ଥିଲେ । ସେ ପ୍ରତ୍ୟହ ବଡ଼ି ସକାଳେ ସ୍ନାନ, ସନ୍ଧ୍ୟାବନ୍ଦନାଦି ସାରି ବାପାଙ୍କ ହୋମ ପାଇଁ ସମିଧ ସଂଗ୍ରହ କରି ଆଣନ୍ତି । ନିର୍ଦ୍ଦିଷ୍ଟ ସମୟରେ ସ୍ନାନ ପୂଜା, ଜପ ତପ, ହୋମ ଯଜ୍ଞ, ଆହାର ବିହାର, ଅଧ୍ୟୟନ କରନ୍ତି । ଜ୍ଞାନୀ, ନିଷ୍ଠାବାନ ମୁନିକୁମାରଙ୍କ ଦେହ ଓ ମୁଖରୁ ପବିତ୍ର ବ୍ରହ୍ମତେଜ ବିକଶି ଉଠୁଥାଏ ।

ଦେଖୁଁ ଦେଖୁଁ ରତ୍ନାକର ପୂର୍ଣ୍ଣ ଯୌବନରେ, ଅଠର ବର୍ଷ ବୟସରେ ପଦାର୍ପଣ କଲେ । ତାଙ୍କ ଦେହ ଉନ୍ନତ, ଚକ୍ଷୁ ଉଜ୍ଜ୍ୱଳ, ଲଲାଟ ପ୍ରଶସ୍ତ, ବକ୍ଷ ବିଶାଳ, ବାହୁ ଆଜାନୁଲମ୍ବିତ ହୋଇ ଉଠିଲା । ତାଙ୍କର ସୁନ୍ଦର ସୁଗଠିତ ଦେହର ତପ୍ତକାଞ୍ଚନ କାନ୍ତି ଦେଖି ଦର୍ଶକ ମନରେ ଭକ୍ତି, ପ୍ରୀତି ସ୍ୱତଃ ସଞ୍ଚାରିତ ହେଉଥିଲା । ତାଙ୍କର ପୂର୍ଣ୍ଣ ଯୌବନ ଲାଭ ସଙ୍ଗେ ସଙ୍ଗେ ଧର୍ମନିଷ୍ଠା, ଆଧ୍ୟାତ୍ମିକ ସାଧନା ନବ ଯୌବନ ପ୍ରାପ୍ତ ହେଲା । ସେ ଅଧିକ ନିଷ୍ଠା ସହ ଦିବା ରାତ୍ରି ହୋମ ଜପ, ପୂଜା ଧ୍ୟାନ କରିବାକୁ ଲାଗିଲେ । ଋଷିଶ୍ରେଷ୍ଠ ଚ୍ୟବନଙ୍କ ପୁତ୍ର, ଧର୍ମରେ ନିଷ୍ଠାବାନ୍ ହେବାର ବିଚିତ୍ର ନୁହେଁ । ସେ ଯେତେବେଳେ ସନ୍ଧ୍ୟାହ୍ନିକ କରନ୍ତି, ପୂଜା ବା ହୋମରେ ବସନ୍ତି, ସେତେବେଳେ ତାଙ୍କୁ ଦେଖି ମନେ ହୁଏ— ସେ ଶାନ୍ତି ଓ ଭକ୍ତିର ଅବତାର । ସେ ଅନ୍ୟାନ୍ୟ ଋଷିକୁମାରମାନଙ୍କ ଭକ୍ତିର ପାତ୍ର ହୋଇ ଉଠିଲେ ।

ରତ୍ନାକରଙ୍କ ଶରୀରରେ ଢେର ବଳ, ମନରେ ଢେର ସାହସ ।

ବାଲ୍ୟକାଳରେ ସେ ସହପାଠିମାନଙ୍କ ମଧ୍ୟରେ ଥିଲେ ଶୀର୍ଷସ୍ଥାନୀୟ । ଯୁବକ ଋଷିକୁମାରମାନଙ୍କର ନେତା ରତ୍ନାକର । ପ୍ରାୟ ପ୍ରତ୍ୟହ ସେମାନଙ୍କ ମଧ୍ୟରେ ମଲ୍ଲଯୁଦ୍ଧ ବା ଲଢ଼ାଇ ହେଉଥିଲା । ବ୍ୟାୟାମ-କ୍ରୀଡ଼ା, ମଲ୍ଲ-ଯୁଦ୍ଧରେ ରତ୍ନାକରଙ୍କୁ କେବେ ହାରି ଯିବାର କେହି ଦେଖି ନ ଥିଲେ । ଭୟ ଯେ କି ଜିନିଷ ସେ ଆଦୌ ଜାଣି ନ ଥିଲେ । ବାଘ ଭାଲୁ ଅନ୍ୟାନ୍ୟ ହିଂସ୍ରଜନ୍ତୁଙ୍କୁ ସେ ଡ଼ରିବେ କଣ—ସେମାନେ ରତ୍ନାକରଙ୍କୁ ଦେଖି ଭୟ କରି ପଳାନ୍ତି । ଯେଉଁ ବାଘକୁ ବଡ଼ ବଡ଼ ଶିକାରୀ, ଯୋଦ୍ଧାମାନେ ବି ଡ଼ରୁଥିଲେ, ରତ୍ନାକର ସେ ବାଘ ଆଗରେ ଅକୁତୋ-ଭୟରେ ଠିଆ ହେଉଥିଲେ । ଥରେ ନିକଟସ୍ଥ ଭିଲ ଗ୍ରାମର ଗୋଟିଏ ଗାଈକି ଗୋଟିଏ ବାଘ ମାଡ଼ି ବସିଲା । ଏହା ଦେଖିବାକ୍ଷଣି ନିର୍ଭୀକ ରତ୍ନାକର ଚୁପ ହୋଇ ରହି ପାରିଲେ ନାହିଁ—ସେ ସ୍ଥାନକୁ ଧାଇଁ ଯାଇ ବାଘର ଗଳା ଚିପି ଧରି ଗାଈକି ଉଦ୍ଧାର କଲେ । ଥରେ ଗୋଟିଏ ମହିଷ ଜଣେ ଋଷିବାଳକଙ୍କୁ ଗୋଡ଼ାଇ ତଡ଼ି ନେଉଥିଲା—ରତ୍ନାକର ମହିଷର ଶୃଙ୍ଗ ଜୋରରେ ଟାଣି ଧରି ତାହାର ଗତିରୋଧ କରି ପକାଇଲେ । ମହିଷଟି ଗାଁ ଗାଁ ଗର୍ଜ୍ଜନ କରି ପଳାଇଲା । ଏପରି ଅନେକ ଥର ସେ ଅସାଧାରଣ ଶକ୍ତି ସାହସର ପରିଚୟ ଦେଇଥିଲେ । ସାଧାରଣରେ ଭିଲମାନେ ବହୁ ଅତ୍ୟାଚାର କରୁଥିଲେ, ବନ ମଧ୍ୟରେ ବାଟୋଇମାନଙ୍କୁ ମାରି ବାନ୍ଧି ସେମାନଙ୍କର ଜିନିଷ ପତ୍ର ଲୁଟି କରି ନେଉଥିଲେ । ଏପରି ଅତ୍ୟାଚାରୀ ନିଷ୍ଠୁର ଭିଲମାନେ ବି ରତ୍ନାକରଙ୍କୁ ଭୟ କରନ୍ତି ।

ସର୍ବବିଦ୍ୟାଧର ସୁଗୁଣୀ-ରତ୍ନାକର ରତ୍ନାକରଙ୍କର ଚରିତ୍ରବଳ ମଧ୍ୟ ଯଥେଷ୍ଟ ଥିଲା । ସେ କେବେ ମିଥ୍ୟା କହନ୍ତି ନାହିଁ, ଅଧର୍ମାଚରଣ କରନ୍ତି ନାହିଁ । ପାପ, ଦ୍ୱେଷ ତାଙ୍କଠାରୁ ବହୁ ଦୂରରେ ଥିଲା । ସେ ସରଳହୃଦୟ, ଦୟାଳୁ, ପରଦୁଃଖକାତର । ଯେଉଁଠାରେ ବିପଦ, ଯେଉଁ

ସ୍ଥାନରେ ଦୁଃଖ ଶୋକ, ସେହି ସ୍ଥାନରେ ରତ୍ନାକର । ତାଙ୍କ ଆଗମନରେ ବିପଦ ଅନ୍ତର୍ହିତ ହୋଇଯାଏ—ଦ୍ୱେଷ କଳହ ପ୍ରେମ ଓ ବନ୍ଧୁତାରେ ପରିଣତ ହୁଏ । ତାଙ୍କୁ ଦେଖିବାମାତ୍ରକେ ରୋଗୀ ଅସୁସ୍ଥ ହୋଇ ଉଠି ବସେ, ଅତ୍ୟାଚାରୀ ଭୟ ଓ ଲଜ୍ଜାରେ ସଙ୍କୁଚିତ ହୋଇ ପଡ଼େ । ସେ ବିପନ୍ନର ଆଶ୍ରୟ, ପରପୀଡ଼କର ଭୟ । ସେ ଲୋକଙ୍କର ସମୟୋଚିତ ସାହାଯ୍ୟ, ଉପକାର କରୁଥିଲେ—ପ୍ରତ୍ୟୁପକାର, ପୁରସ୍କାର ଆଶାରେ ନୁହେଁ । ଲୋଭ ତାଙ୍କୁ ସ୍ପର୍ଶ କରି ନ ଥିଲା । ରୂଢ଼ ବାକ୍ୟରେ କାହା ମନରେ ଭୟ ଜନ୍ମାଉ ନ ଥିଲେ । କେହି ତାଙ୍କର ପଦଧୂଳି ଯାଚନା କଲେ, ସେ ହସି ହସି ପାଦ ଟେକି ଦିଅନ୍ତି । କେହି ପ୍ରଣାମୀ ସ୍ୱରୂପ କୌଣସି ଉପହାର ଦେବାକୁ ହାତ ବଢ଼ାଇଲେ ସେ ବିରକ୍ତିରେ ସେ ସ୍ଥାନରୁ ଚାଲି ଯା'ନ୍ତି । କେହି କୌଣସି ରୋଗର ଔଷଧ ମାଗିଲେ ସେ ନିର୍ମାଲ୍ୟ ଦେଇ ତାହାକୁ ବିଦାୟ କରନ୍ତି । ରତ୍ନାକରଙ୍କର ଉନ୍ନତ ବିଶୁଦ୍ଧ ଚରିତ୍ର ଦେଖି ସମସ୍ତେ ତାଙ୍କୁ ଭକ୍ତି ସମ୍ମାନ କରୁଥିଲେ ।

ରତ୍ନାକର ପ୍ରତି ଦିନ ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାବେଳେ ତମସାରେ ସ୍ନାନ କରି ନଦୀ ତୀରରେ ବସି ସନ୍ଧ୍ୟା ବନ୍ଦନା, ପୂଜା ଇତ୍ୟାଦି କରନ୍ତି । ସେତେବେଳେ ତାଙ୍କ ମୁଖର କାନ୍ତି, ଦେହର ଶୋଭା ଉଜ୍ଜ୍ୱଳ ବିକଶିତ ହୋଇ ଉଠେ । ପରିଧାନରେ କୌଶେୟ, ସ୍କନ୍ଧରେ ହରିନାମା-ବଳୀ, ଲଲାଟରେ ତ୍ରିପୁଣ୍ଡ୍ରକ—ବାହୁ ଚନ୍ଦନଚର୍ଚ୍ଚିତ, ଚମ୍ପକବର୍ଣ୍ଣ ବିନିନ୍ଦୀ ସୁନ୍ଦର ଶରୀର ଉପରେ ଶୁଭ୍ର ଉପବୀତ । ରୂପ ସତେ ଯେପରି ଉଚ୍ଛୁଳି ଉଠୁ ଥିଲା ।

ତମସାତଟ ଅତି ସୁନ୍ଦର, ନିର୍ଜ୍ଜନ, ପାବନ । ତିନି ଦିଗରେ ଘନ ଶାଳବନ, ଏକ ଦିଗରେ ତମସା । ଚତୁର୍ଦ୍ଦିଗରେ ଅର୍ଦ୍ଧକ୍ରୋଶ ମଧ୍ୟରେ

ଲୋକାଳୟ ନାହିଁ । ସ୍ଥାନଟି ଥରେ ଦେଖିଲେ ଆଉ ମନରୁ ଯାଉ ନ ଥିଲା । ଚ୍ୟବନ-ତପୋବନର ଚରଣ ଧୌତ କରି ତମସା କଳ କଳ ନାଦରେ ପ୍ରବାହିତ । ଅପର ପାର୍ଶ୍ୱରେ ବାଲୁକାରାଶି, ତା' ପଛରେ ତୃଣ-ଶୂନ୍ୟ କଙ୍କରପୂର୍ଣ୍ଣ ବିସ୍ତୃତ ପ୍ରାନ୍ତର—ପ୍ରାନ୍ତର ପଛ ଭାଗରେ ନିବିଡ଼ ସୁଦୂରବିସ୍ତୃତ ଅରଣ୍ୟ । ଅରଣ୍ୟଟି ଶାଳ ପଲ୍ଲିରେ ପୂର୍ଣ୍ଣ । ଏହି ତମସା-ତୀରରେ ଭାବୁକ ରତ୍ନାକର ପ୍ରତ୍ୟହ ଶୁଦ୍ଧ ପୂତ ମନରେ ବସି ପ୍ରାଣ ଖୋଲି ଭଗବାନଙ୍କୁ ଡ଼ାକୁଥିଲେ । ତାଙ୍କ ପ୍ରାଣର ଡ଼ାକ ବୃକ୍ଷ ଶାଖାରେ ପକ୍ଷି-କଣ୍ଠରେ ମୁଖରିତ ହେଉଥିଲା—ପକ୍ଷିଗାନ ତମସାର କଳ କଳ ନାଦରେ ପ୍ରତିଧ୍ୱନିତ ହୋଇ ଉଠୁଥିଲା । ତରୁଣ ସାଧକ ତନ୍ମୟ ହୋଇ ସେହି ଆକାଶ-ପ୍ରତିବମ୍ବିତ ଚିତ୍ର ମଧ୍ୟରେ ବସି ସ୍ୱର୍ଗୀୟ ବିଶ୍ୱ-ସଙ୍ଗୀତ ଶୁଣୁଥିଲେ । ଆହା କି ରମଣୀୟ ସେ ଦୃଶ୍ୟ !

ତମସା ଅତି ସୁନ୍ଦର । କେବେ ଶାନ୍ତ, ସ୍ଥିର - କେବେ ବା ଗମ୍ଭୀର, ଗର୍ଜ୍ଜନଶୀଳ । ସ୍ରୋତସ୍ୱତୀ ମାତ୍ରକେ କୋମଳାଙ୍ଗୀ । କେବେ ସେ ବାଳିକା, କେବେ ବା ପୂର୍ଣ୍ଣଯୌବନା—କେବେ ମ୍ରିୟମାଣା, କେବେ ଅବା ଉଚ୍ଛ୍ୱାସମୟୀ । ତମସାର ଉଚ୍ଛ୍ୱାସ ଅତିମାନ ଥିଲା, ଝଙ୍କାର କୋମଳତା ଥିଲା । ତମସା ଭାବ-ବିଭୋର ରତ୍ନାକରଙ୍କ ନିକଟରେ ଭାବ-ବିହ୍ୱଳା ପ୍ରେମ-ମୟୀ କିଶୋରୀ । ଏହି ତମସାକୂଳରେ ବସି ରତ୍ନାକର ଭକ୍ତି, ପ୍ରେମ ଶିକ୍ଷା କରିଥିଲେ—ତମସାତୀରରେହିଁ ମହାମୁନି ଆଦିକବି ବାଲ୍ମୀକି ନୂତନ ପ୍ରେମ, ଭକ୍ତି, ଜ୍ଞାନ ଲାଭ କରି ଭାରତକୁ, ସାରା ଜଗତକୁ ପ୍ରେମ, ଭକ୍ତି, ଜ୍ଞାନ ଶିଖାଇଥିଲେ । ସେହି ସ୍ୱର୍ଗୀୟ ପ୍ରେମଭକ୍ତିଗାନ ତମସା ତଟରେ ପ୍ରତିଧ୍ୱନିତ— ସେହି ପୂତ ପ୍ରେମମନ୍ତ୍ର ତମସାର ତରଙ୍ଗେ ତରଙ୍ଗେ ମୁଖରିତ । ଏକ କଥାରେ— ତମସା ହିନ୍ଦୁର ଗୁରୁ, ଜଗତର ଉପଦେଷ୍ଟା !

୩

ତମସା କେଉଁଠାରେ ସ୍ଥିର— କଳହପ୍ରିୟା ସ୍ଥୂଳାଙ୍ଗୀ ସ୍ତ୍ରୀ ଯେପରି ସ୍ଥିରୋଦରୀ; କେଉଁଠାରେ ବା ସଙ୍କୀର୍ଣ୍ଣ—ନବବିବାହିତା ଲଜ୍ଜା-ପୀଡ଼ିତା ବାଳିକା ଯେପରି ସଙ୍କୁଚିତା । ବର୍ଷା ସମାଗମରେ ତମସାର ଦୃଶ୍ୟ ଭୟଙ୍କର ହୋଇ ଉଠେ । ଅଜି ତାହାର ଦୃଶ୍ୟ ଭୀଷଣ । ମଧ୍ୟାହ୍ନରେ ପ୍ରବଳ ବୃଷ୍ଟି ହୋଇ ବନ୍ଦ ହୋଇଅଛି । ସନ୍ଧ୍ୟା ପ୍ରାୟ ଆଗତ । ବର୍ତ୍ତ-ମାନ ସୁଦ୍ଧା ଆକାଶ ସ୍ଥାନେ ସ୍ଥାନେ ମେଘାବୃତ । ବାୟୁ ଜଳକଣା ନେଇ ମନ୍ଦ ମନ୍ଦ ପ୍ରବାହିତ । କୂଳପ୍ଲାବିନୀ ତମସା ଚଞ୍ଚଳ ହୃଦୟରେ ଫେନମାଳା-ମସ୍ତକରେ ଉନ୍ମାଦିନୀ ପରି ଦ୍ରୁତଗାମିନୀ । ବୋଧ ହେଉଥିଲା, ଯୁବତୀ ଯେପରି ଶ୍ରାଗ, ଅଧରମାନରେ ପିତୃଗୃହ ଛାଡ଼ି, ବକୁଳଫୁଲମାଳା କେଶରେ ଗୁଡ଼ାଇ ବ୍ୟାକୁଳ ପ୍ରାଣରେ ସ୍ୱାମୀ ସଙ୍ଗେ ପ୍ରେମ-ସମ୍ଭାଷଣ କରିବାକୁ ଉନ୍ମତ୍ତ ପଦବିକ୍ଷେପରେ ଧାଇଁ ଅଛି ।

ଏହି ସମୟରେ ରତ୍ନାକର ସ୍ନାନ ସାରି ନଦୀ ତୀରରେ କୁଶାସନ ଉପରେ ଧ୍ୟାନମଗ୍ନ । ସେହି ଶାନ୍ତ-ଅଧିଷ୍ଠିତ ପବିତ୍ର ସ୍ଥାନରେ ଯୁବକଙ୍କ କମନୀୟ ଦେହରୁ ବିମଳ ସ୍ୱର୍ଣ୍ଣ-କାନ୍ତି ଫୁଟି ଉଠୁଅଛି । ନିକଟରେ ଜନ-ମାନବ କେହି ନାହିଁ । ଏପରି ସମୟରେ ହଠାତ୍ ସେ ଗୋଟିଏ କରୁଣ ଚିତ୍କାର ଶୁଣିଲେ— 'ମଲି ମଲି, ରକ୍ଷାକର' । ତାଙ୍କର ଧ୍ୟାନ ଭାଙ୍ଗି ଗଲା । ଉଠି ପୁନର୍ବାର ସେହି ଆର୍ତ୍ତନାଦ ଶୁଣିବା ପାଇଁ ଉତ୍କର୍ଣ୍ଣ ହୋଇ ଠିଆ ହେଲେ । ପୁଣି ଶୁଭିଲା —'ବୁଡ଼ି ମରୁଚି, କିଏ କେଉଁଠି ଅଛ ଆସ, ରକ୍ଷାକର ।' ଅଭିନବ ମାନସିକ ଉଦ୍‌ବେଗ ତାଙ୍କ ପାଦକୁ ଚଞ୍ଚଳ କରି ପକାଇଲା । ସେ ଉତ୍ତରୀୟଟି କୁଶାସନରେ ପକାଇ ଦେଇ ଅନ୍ଧାରେ ଘମ୍ମୁଷ ଭିଡ଼ି ଏକ ନିଶ୍ୱାସରେ ନଦୀ ଧାରକୁ ଧାଇଁଗଲେ । କାହାକୁ

ଦେଖିପାରିଲେ ନାହିଁ । ତର ତର ହୋଇ ନିକଟସ୍ଥ ଗୋଟିଏ ବୃକ୍ଷର ଶିଖରକୁ ଉଠିଲେ । ସେଠାରୁ ଦେଖିଲେ, ନଦୀ-ବକ୍ଷରେ କିଛି ଦୂରରେ ଖଣ୍ଡିଏ ଛୋଟ ନୌକା ଉଲଟି ଯାଇଛି, ତରଙ୍ଗ ମୁଖରେ ତୀର ବେଗରେ ଆସୁଅଛି । ତହିଁ ମଧ୍ୟରେ ଆରୋହୀ ଅଛି କି ନା ଜାଣିବାର ଉପାୟ ନାହିଁ — ଥିଲେ, ଜୀବିତ ଥିବା ସମ୍ଭବପର ନୁହେ । ରତ୍ନାକର ଉତ୍କଣ୍ଠିତ ହୋଇ ନିରୀକ୍ଷଣ କଲେ । ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ଦୂରରେ, ନୌକାର ବନ୍ଧ ପଛରେ ଗୋଟିଏ ଭାସମାନ ପଦାର୍ଥ — ପଦାର୍ଥ ନୁହେ, ଗୋଟିଏ କ୍ଷୁଦ୍ର ମାନବ ଦେହ । ଦେହଟି ପୁରୁଷର କି ସ୍ତ୍ରୀର ଧରି ହେଉନାହିଁ । ଦେଖୁଁ ଦେଖୁଁ ଭାସମାନ ଶରୀର ସେହି ବୃକ୍ଷର ନିକଟବର୍ତ୍ତୀ ହେଲା । ସାହସୀ ପରୋପକାରୀ ରତ୍ନାକର ସ୍ଥିର ରହିପାରିଲେ ନାହିଁ — ଭୀମକଳେବର ତମସା ବକ୍ଷରେ ଝମ୍ପ ପ୍ରଦାନ କଲେ ।

ମାନବ ଦେହଟି ଭିଡ଼ି ଧରି ସେ ବହୁ କଷ୍ଟରେ ଉଗ୍ରା ନଦୀର ରୁଦ୍ର ତରଙ୍ଗରଙ୍ଗ ସଙ୍ଗେ ପ୍ରାଣପଣେ ଲଢ଼ାଇ କରି ତଟରେ ଉଠିଲେ । ଶରୀରଟି ଜଣେ ସଂଜ୍ଞାହୀନା ରୂପବତୀ ଯୁବତୀର । ନଦୀତୀରରେ ବାଲୁକା-ଶଯ୍ୟାରେ କଶୋଦରୀକୁ ଶାୟିତ କରି ଦେଲେ । ନିଜ କଟିଦେଶରୁ ଗାମୁଛା ବାହାର କରି ତପ୍ପୁଡ଼ ସେଥିରେ ଯୁବତୀର ମୁହଁ, ହାତ, ପାଦ ପୋଛପୋଛି କଲେ । ପରେ ତାହାକୁ ଉଠାଇ ଧରି ବାୟୁବେଗରେ ନିଜ ଆସନ ନିକଟକୁ ଧାଇଁଗଲେ । ସେଠାରେ ବସି ବାମ ଜାନୁ ଉପରେ ବାଳିକାର ମସ୍ତକ ରଖି ତାହାର ଚୈତନ୍ୟ ଫେରାଇ ଆଣିବାକୁ ଚେଷ୍ଟା କଲେ । ବେଶ ଭୂଷା ଦେଖି ସ୍ଥିର କଲେ, ବାଳିକାଟି ଭିଲ୍ ଜାତିରେ ଜାତ । ତାହାର ସିକ୍ତ ମୁକ୍ତ ଲୁଲିତ କେଶରାଶି ମୁଖ ଉପରେ ବିକ୍ଷିପ୍ତ ହୋଇ ପଡ଼ି-ଥିଲା, ତାହାର ନୀଳୋତ୍ପଳ ସଦୃଶ ନୟନଯୁଗଳ ନିମୀଳିତ । ବାଳିକା ତାହାର କାଉଦବର୍ଣ୍ଣ କେଶଗୁଚ୍ଛ ମଧ୍ୟରେ ନାନା ଜାତିର ଫୁଲ ଗୁଞ୍ଜି ଥିଲା—



ତମସା ବକ୍ଷରୁ ଶୁଳ କନ୍ୟାର ଉଦ୍ଧାର

ନଦୀଜଳରେ କେତୋଟି ଭସି ଯାଉଛି, କେତୋଟି ମସ୍ତକରେ ଲାଗି ରହିଛି । ରତ୍ନାକର ତାହାର ମୁଖମଣ୍ଡଳକୁ କେଶାବରଣରୁ ମୁକ୍ତ କଲେ । ତାହାର ଆର୍ଦ୍ର ବସ୍ତ୍ର ପୋଛିବାକୁ ଆରମ୍ଭ କଲେ । ପରେ ତାହାର ମୁଖକୁ ଅପଲକ ନେତ୍ରରେ ଗ୍ରହି ରହିଲେ ।

ବାଳିକା ବର୍ତ୍ତମାନ ଚତୁର୍ଦ୍ଦଶବର୍ଷୀୟା ଉନ୍ମେଷୋନ୍ମୁଖୀ ଯୁବତୀ । ବସନ୍ତ ସମାଗମରେ ତରୁଲତା ଯେପରି ପତ୍ର ପୁଷ୍ପରେ ଆବୃତ ହୁଏ, ନବ-ଯୌବନାଗମରେ ସେପରି ବାଳିକାର ଦେହ ଅପୂର୍ବ ସୌନ୍ଦର୍ଯ୍ୟରେ ଭରି ଉଠୁଛି । ତାହାର ବଦନମଣ୍ଡଳରେ ମାଧୁର୍ଯ୍ୟ, ପବିତ୍ରତା, ଶରୀରରେ ଲାବଣ୍ୟ, ସରସତା କ୍ରୀଡ଼ା କରୁଅଛି । ତାହାର ପ୍ରତ୍ୟେକ ଅଙ୍ଗରେ ରୂପୋଚ୍ଛ୍ୱାସ—ସେ ଅନୁପମା ସୁନ୍ଦରୀ । ବିଧାତା ଯେପରି ସୌନ୍ଦର୍ଯ୍ୟରାଶି ଅପହରଣ କରି ଆଣି ତାହାର ଅଙ୍ଗରେ ସଜାଇ ରଖିଛି । ଯୌବନ ସଙ୍ଗେ ତାହାର ଅତୁଳନୀୟ ରୂପ ଦିନୁଦିନ ବୃଦ୍ଧି ପାଉଅଛି—ବିକାଶୋନ୍ମୁଖ ମୁକୁଳ ଯେପରି ପୂର୍ଣ୍ଣ ବିକଶିତ ହେବାକୁ ଯାଉଅଛି, କ୍ଷୁଦ୍ର ସ୍ରୋତସ୍ୱତୀ ବର୍ଷାଗମରେ ଯେପରି ବିଶାଳ ନଦୀରେ ପରିଣତ ହେବାକୁ ଯାଉଅଛି ।

ସେ ଯୌବନୋନ୍ମୁଖୀ ଯୁବତୀ, ଅଥଚ ଅନ୍ତଃ ପ୍ରକୃତିରେ ସେ ବାଳିକା । ରତ୍ନାକର ଭାବିଲେ, ବାଳିକା କାମନାରହିତା, ବାସନା-ଶୂନ୍ୟା—ସଂସାରର ଛଳନା, ପ୍ରତାରଣା କିଛି ସେ ଜାଣେ ନା । ସେହି ଧର୍ମପ୍ରତିଷ୍ଠିତ କର୍ମ-ମନ୍ଦିରରେ ପାପ-ଦ୍ୱାର ଯେପରି ରୁଦ୍ଧ । ବାଳିକାର ଚକ୍ଷୁରେ କଜ୍ଜଳ, ଭ୍ରୂଯୁଗ ମଧ୍ୟରେ ସିନ୍ଦୂରବିନ୍ଦୁ, ପାଦରେ ଅଲକ୍ତକ—ଏସବୁ କଲ୍ଲ ଜଳସଂଗ୍ରାମରେ ନଷ୍ଟ, ପ୍ରାୟ ଅନ୍ତର୍ହିତ । ଓଷ୍ଠାଧାର ବା ଭ୍ରୂଯୁଗଳ ରଂଜିତ କରିବାର କୌଣସି ପ୍ରୟୋଜନ ନ ଥିଲା । ଓଷ୍ଠାଧର ପଦ୍ମଦଳ ପରି ସତତ ରକ୍ତିମାଭ, ଭ୍ରୂଦ୍ୱୟ ଯେପରି ନିପୁଣ ଚିତ୍ରକର ଦ୍ୱାରା ପଟରେ ଅଙ୍କିତ ।

ବାଳକାର ସମଗ୍ର ରୂପବିଭବରେ ରତ୍ନାକର ମୁଗ୍ଧ, ଚକିତ । ତରୁଣୀରୂପରେ ତାଙ୍କର ଏ ମୋହ, ବିସ୍ମୟ, କୌତୂହଳ ହେଉଛି ଜୀବନରେ ପ୍ରଥମ । ଜନନୀଙ୍କ ଭିନ୍ନ ଅନ୍ୟ ସ୍ତ୍ରୀ ପ୍ରଧାନରେ ଯୁବତୀ ସଙ୍ଗେ ଆଳାପ କରିବା, ମୁଖାମୁଖୀ ହୋଇ ଯୁବତୀ ମୁଖ ଦର୍ଶନ କରିବା, ସ୍ତ୍ରୀ ଅଙ୍ଗ ସ୍ପର୍ଶ କରିବା ସୁଯୋଗ ବା ଦୁର୍ଯୋଗ ରତ୍ନାକରଙ୍କ ଜୀବନରେ ଏଥି ପୂର୍ବେ କେବେ ଘଟି ନ ଥିଲା । ଆଜି କିନ୍ତୁ ତାଙ୍କ ଜୀବନରେ ନୂତନ ଅଧ୍ୟାୟ ଫିଟି ଅଛି — ତାଙ୍କ ମନୋବୃତ୍ତିରେ ଅପୂର୍ବ ପରିବର୍ତ୍ତନ ଆସିଅଛି । ଜୀବନରେ ପ୍ରଥମ ଥର ଆଜି ତାଙ୍କ ହୃଦୟରେ ରମଣୀସୌନ୍ଦର୍ଯ୍ୟ ପ୍ରଶଂସା କରିବା ପ୍ରବୃତ୍ତି ବିକାଶ ପାଇଛି — ନାରୀରୂପସୁଧା ପାନ କରିବା ସ୍ପୃହା ଉଦିତ ହୋଇଅଛି । ପ୍ରେମ ଯୌବନର ଧର୍ମ । ମନୁଷ୍ୟ ଚେଷ୍ଟା କରି ତାହାର ବିକାଶ ବିକୃତ କିମ୍ବା ବିଳମ୍ବିତ କରିପାରେ — କିନ୍ତୁ ବିନଷ୍ଟ କରି ନ ପାରେ । ସୁଯୋଗ ପାଇଲେ ପ୍ରେମ ମାନବ-ହୃଦୟରେ ଆତ୍ମବିକାଶ କରେ ।

ଚେତନାହୀନା କିଶୋରୀର ମୁଖରେ ଅସ୍ତଗାମୀ ସୂର୍ଯ୍ୟର କନକ-କିରଣ ପଡ଼ି ତାହାର ଶୋଭା ବଢ଼ାଉଅଛି । ତାହା ପଲକଶୂନ୍ୟ ଚକ୍ଷୁରେ ଦେଖି ରତ୍ନାକରଙ୍କ ହୃଦୟ ପ୍ରେମ-ଚଞ୍ଚଳ ହେବାକୁ ଆରମ୍ଭ କଲା । ବାଳକାର ଅଙ୍ଗସ୍ପର୍ଶରେ ତାଙ୍କ ଦେହ ପୁଲକିତ ହୋଇ ଉଠିଲା । ସେ ଭାବିଲେ — "ପଙ୍କରୁ ଜନ୍ମି ପଙ୍କରେ ଜଡ଼ିତ ହେଲେହେଁ ପଙ୍କଜ ସୁନ୍ଦର । କଳଙ୍କଯୁକ୍ତ ହେଲେହେଁ ଚନ୍ଦ୍ରମା ସୁନ୍ଦର । ବାଳକା ଅନାର୍ଯ୍ୟଜାତିର ହେଲେ ମଧ ପଦ୍ମ ଓ ଚନ୍ଦ୍ର ଅପେକ୍ଷା ଅଧିକ ସୁନ୍ଦରୀ । ଦେଖି ନାହିଁ କେବେ, ଶୁଣିଛି — ସ୍ୱର୍ଗର ଅପ୍ସରାମାନେ ଅତି ସୁନ୍ଦରୀ, ଏ ବୋଧହୁଏ ଜଣେ ଅପ୍ସରା — ଶାପରେ ମାନବୀ ହୋଇ ଭିଲକୁଳ ଅଲଙ୍କୃତ କରିଅଛି । ଏ ଅରଣ୍ୟର ଅନାଘ୍ରାତ ପୁଷ୍ପ, ଭିଲପଲ୍ଲୀର ପ୍ରସ୍ଫୁଟିତ ପଦ୍ମ । ସେଠାରେ

ନ ମଉଳ ମୋତେ ନାରୀ-ରୂପମାଧୁରୀ-ଅନୁଭବ ଶିଖାଇବା ପାଇଁ ତମସା-ତରଙ୍ଗରେ ଭାସି ଆସିଛୁ— ଆସି ମୋ ଚକ୍ଷୁ ଆଗରେ ପ୍ରେମ-ରାଜ୍ୟର ଦ୍ୱାର ଖୋଲିଅଛୁ ।”

ରତ୍ନାକରଙ୍କ ସେବା ଯତ୍ନରେ ବାଳିକାର ଚୈତନ୍ୟୋଦୟ ହେଲା । ସେ ଆକର୍ଣ୍ଣ-ବିସ୍ତୃତ ନେତ୍ରଯୁଗଳ ଉନ୍ମୀଳିତ କରି ରତ୍ନାକରଙ୍କ ମୁଖକୁ କିଛି କ୍ଷଣ ଅନାଇଁଲା । ସେ ଦୃଷ୍ଟିରେ କଟାକ୍ଷ ନାହିଁ— ଅଛି ମଧୁର ସରଳ, ପ୍ରେମ-ଢଳଢଳ ମନ୍ଦହାସ । ଚାରି ଚକ୍ଷୁ ମିଳିତ ହେଲା । ଉଭୟ ପ୍ରାଣରେ ପରସ୍ପର ପ୍ରତି ପ୍ରଣୟ ଅନୁରାଗ ଯୁଗପତ୍ ଉଦ୍ରିକ୍ତ ହୋଇଗଲା, ତରଙ୍ଗାୟିତ ହୋଇ ଉଠିଲା । ଅପୂର୍ବ ଭାବାବେଶରେ ରତ୍ନାକର କ୍ଷଣ-କାଳ ଆତ୍ମବିସ୍ମୃତ ହୋଇ ବସିଲେ । ମନେ ମନେ ଯୁବତୀଙ୍କ କହିଲେ— “ମୁଁ ତ ପରାସ୍ତ ହୋଇଛି, ମୋତେ ମାରିବା ପାଇଁ ତୋର ଏ ରଣବେଶ ଆଉ କାହିଁକି ସୁନ୍ଦରି ?’

ଏ କଥା ବାଳିକା ଶୁଣିପାରିଲା ନାହିଁ— ଶୁଣି ପାରିବ ବା କିପରି ? ଅଥଚ ନବୀନ ପ୍ରେମିକ ରତ୍ନାକରଙ୍କର ଏ ମନୋଭାବ ବାଳିକା ହୃଦୟରେ ଯେପରି ପ୍ରତିବିମ୍ବିତ ହୋଇଗଲା । ତାହାର ସୁକୁମାର ତନୁ ରୋମାଞ୍ଚିତ । ସେ ଅପୂର୍ବ ଆନନ୍ଦ ଅନୁଭବ କଲା । ତାହାର ଗୁରୁ ଓଷ୍ଠାଧରରେ ମୃଦୁହାସ୍ୟର ଗୋଟିଏ ରେଖା ଭାସିଗଲା । ସେହି ମଧୁର ହାସ୍ୟ ସଙ୍ଗେ ସଙ୍ଗେ ରତ୍ନାକରଙ୍କ ଅଧରରେ ହାସ୍ୟ ଫୁଟାଇ ଦେଲା । ଦୁହିଁଙ୍କର କୋମଳ ହୃଦୟରେ ପ୍ରଣୟର ଗୋଟିଏ ତାଡ଼ିତ୍‌ସ୍ରୋତ ଖେଳିଗଲା । ଆର୍ଦ୍ର-ତାରେ ବାଳିକାର ଦେହ ରୋମାଞ୍ଚିତ ହୋଇଥିଲା—ମର୍ତ୍ତ୍ୟମଦନ ରତ୍ନାକର-ଙ୍କର ସୁଗଠିତ ସୁନ୍ଦର ଶରୀରସ୍ପର୍ଶରେ ରୋମାଞ୍ଚ ବୃଦ୍ଧି ପାଇଲା । କିନ୍ତୁ ପର-ଧେୟରେ ବାଳିକାର ଦେହ ଥରୁ ଥିଲା— ଯୁବକଙ୍କର ପ୍ରସନ୍ନ ମୁଖ, ଉଜ୍ଜ୍ୱଳ

ଚକ୍ଷୁ ଦର୍ଶନରେ କମ୍ପନ ବୃଦ୍ଧି ପାଇଲା । ଲଜ୍ଜା, ସଙ୍କୋଚ ଆଗେ ତାହାକୁ କେବେ ଆକ୍ରମଣ କରି ନ ଥିଲା, ବର୍ତ୍ତମାନ ସେ ଲଜ୍ଜାଅବନତା, ସଙ୍କୁଚିତା । ଲଜ୍ଜା ତାହାକୁ ଅଧିକ କାଳ ରତ୍ନାକରଙ୍କ କୋଳରେ ଶୁଆଇ ରଖିଲା ନାହିଁ, ତାହାକୁ ଉଠାଇ ବସାଇଲା—ଖାଲି ବସାଇଲା ନାହିଁ, ମୁଖ କିଞ୍ଚିତ୍ ନତ କରି ପକାଇଲା । ନବଜାତ ପ୍ରଣୟ ପ୍ରଭାବରେ ତାହାର ମୁଖ ମନ୍ଦହାସରେ ପୂରି ଉଠିଲା । ତାହା କିନ୍ତୁ ରତ୍ନାକର ଲକ୍ଷ୍ୟ କରି ପାରିଲେ ନାହିଁ ।

ବାଳିକା କୋମଳ ସ୍ୱରରେ ପଚାରିଲା—'ତୁମେ କିଏ ?'

ରତ୍ନାକର—ଏ ପ୍ରଶ୍ନର ଉତ୍ତର ଦେବି ପରେ । ଆଗେ ତୁମେ ବସ୍ତ୍ର ବଦଳାଇ ଦିଅ ।

ସେ ନିଜ ଉତ୍ତରୀୟପ୍ରାନ୍ତ ବାଳିକାକୁ ପିନ୍ଧିବାକୁ ଦେଲେ । ଉତ୍ତରୀୟ ତାହାର ହାତକୁ ବଢ଼ାଇବା ସଙ୍ଗେ ସଙ୍ଗେ ତାଙ୍କର ମନେ ହେଲା, ସେ ଯେପରି ନିଜ ହୃଦୟ ତାହାକୁ ଦେଇ ପକାଇଛନ୍ତି । ବାଳିକା କିଛି ଦୂର ଗଛକୁଞ୍ଜ ଗର୍ଭରେ ଅପସୃତ ହୋଇ ଦେହରୁ ଆର୍ଦ୍ର ପରିଧେୟ ବାହାର କରି ରତ୍ନାକରଙ୍କର ଉତ୍ତରୀୟ ପରିଧାନ କଲା । ତାହାର ବିବେଚନାରେ— ତାହା ଯୁବକଙ୍କର ଉତ୍ତରୀୟ ନୁହେ, ପ୍ରଣୟବୋଲା ପ୍ରାଣ, ସେହି ପ୍ରାଣରେ ନିଜ ଅଙ୍ଗ ଯେପରି ଢ଼ାଙ୍କି ଅଛି । ସେ ସ୍ଥାନଭ୍ରଷ୍ଟ କେଶଗୁଚ୍ଛ ଏକତ୍ର ବାନ୍ଧି, ଦେହ ହାତ ଭଲ କରି ପୋଛି ପୋଛି କରି ଧୀରେ ଧୀରେ ରତ୍ନାକରଙ୍କ ପାଖରେ ଆସି ବସିଲା, ଅଧୋବଦନରେ କହିଲା— 'ମୋ ପ୍ରଶ୍ନର ଉତ୍ତର ଏଥର ପାଇବି ତ ? ମୋତେ ଏଠାକୁ ଆଣିଲା କିଏ ?'

ରତ୍ନାକର ହସହସ ମୁଖରେ ଆତ୍ମପରିଚୟ ଦେଇ ବାଳିକାକୁ କିପରି ଉଦ୍ଧାର କଲେ କହିଲେ ।

ବାଳକା—ମୋର ତୁମେ ବଡ଼ ଉପକାର କରଛ—ଏ ଋଣ ଜୀବନରେ
କେବେ ପାସୋର ପାରବ ନାହିଁ କ ସୁଝି ପାରବ ନାହିଁ ।

ରତ୍ନାକର—ଏଥିରେ ପ୍ରଶଂସାର କଥା କଛ ନାହିଁ । ମୁଁ ପରୋପକାରକୁ
ଜୀବନର ବ୍ରତ କର ନେଇଛ । କର୍ତ୍ତବ୍ୟ ପାଳନ କରୁଛ
ମାତ୍ର । ଯେ ପ୍ରକୃତରେ ପରୋପକାରକୁ କର୍ତ୍ତବ୍ୟ ମନେ
କରଥାଏ, ସେ ପ୍ରତ୍ୟୁପକାର ଆଶା କରେ ନାହିଁ ।

ଏପରି କହିଲେ ସତ; କିନ୍ତୁ ତାଙ୍କର ଅନ୍ତର ବାସ୍ତବରେ ପ୍ରତ୍ୟୁପକାର ଆଶା କଲା । ସେ ମନେ ମନେ ଚାହିଁଲେ ଏ ଉପକାରର ବଦଳରେ ବାଳକାର ଚର ପ୍ରେମ । ରତ୍ନାକର ବାଳକାର ପରଚୟ ପ୍ରଶ୍ନ କରବାରୁ ସେ ଜଣାଇଲା ଯେ, ସେ ନକଟସ୍ଥ ଅନାର୍ଯ୍ୟ ପଲ୍ଲିର ଭିଲ ସର୍ଦ୍ଦାର ଉମାଜୀର ଏକ ମାତ୍ର କନ୍ୟା ।

ରତ୍ନାକର—ନାମ ?

ବାଳକା—ମାତଙ୍ଗୀ !

ଯୁବକ ଭାବିଲେ, ମାତଙ୍ଗୀଗାମିନୀର 'ମାତଙ୍ଗୀ' ନାମ ସାର୍ଥକ ହୋଇଅଛ ।

ପ୍ରଥମ ପ୍ରଣୟୋଚ୍ଛ୍ୱାସରେ ବହ୍ୱଳ ହୋଇ ଦୁହେଁ ଏପରି ପ୍ରେମାଳାପ କରୁଛନ୍ତି, ଏ ସମୟରେ ଗୋଟିଏ ନୌକା ହଠାତ୍ ଆସି ନଦୀ ତୀରରେ ଲାଗିଲା । ନୌକାର ଆରୋହୀ ଦୁଇ ଜଣ । ମାତଙ୍ଗୀ ନୌକା ଆଡ଼କୁ କଛ ସମୟ ଅନାଇଁ ରହି କହି ଉଠିଲା—'ହୋଇଛି, ବାପା ଆସିଛନ୍ତି ।' ସେ ତରତର ପଦରେ କୂଳକୁ ଧାଇଁ ଗଲା ।

ସେ ଦନ ମାତଙ୍ଗୀ, ତାହାର ଜଣେ ସହଚରୀ ପ୍ରମୋଦ-ନୌକାରେ ବସି ନଦୀ-ବହାର କର ବାହାରଥିଲେ । ଗାନ କୌତୁକ କର ଯାଉଁ ଯାଉଁ ହଠାତ୍ ନୌକାଟି ଉଲଟିଗଲା । ମାତଙ୍ଗୀର ସଙ୍ଗିନୀ ବୁଡ଼ିଗଲା,

ତାହାର ଚିହ୍ନ ବର୍ତ୍ତି ଆଉ ଦିଶିଲା ନାହିଁ । ଉମାଜୀ ନଦୀର ଅପର ପାର୍ଶ୍ୱରୁ ନୌକା ଉଲଟି ଯିବାର ଦେଖିବା ମାତ୍ରକେ ଜଣେ ଅନୁଚର ସହିତ ମାତଙ୍ଗୀର ଉଦ୍ଧାର ପାଇଁ ପବନ ବେଗରେ ନୌକା ଚଳାଇଲା । ଶେଷରେ କନ୍ୟାକୁ ଏଠାରେ ଦେଖି ନୌକାଗତି ବନ୍ଦ କରି ତୀରକୁ ଉଠିଲା ।

ସେ କନ୍ୟାକୁ ଆନନ୍ଦରେ ଆଲିଙ୍ଗନ କରି ପକାଇ ପଚାରିଲା— 'କେମିତି ରକ୍ଷା ପାଇଲୁ ମାଉ ?' ମାତଙ୍ଗୀ ରତ୍ନାକରଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା, ଚ୍ୟବନଙ୍କ ପୁତ୍ର ତାହାକୁ ଉଦ୍ଧାର କରିଛନ୍ତି । ସେତେବେଳକୁ ରତ୍ନାକର ସେଠାରେ ଯାଇ ଉପସ୍ଥିତ । ଉମାଜୀ ତାଙ୍କୁ ପ୍ରଣାମ କରି କୃତଜ୍ଞତା-ସୂଚକ ସ୍ୱରରେ କହିଲା, "ଋଷିକୁମାର, ମୋତେ ଆଜି କନ୍ୟା ଦାନ କରିଚ । ଏ ଋଣ କପରି ସୁଝିବି ଜାଣିପାରୁ ନାହିଁ ।" ରତ୍ନାକର ଅଳ୍ପ ହସି ଠିଆ ହେଲେ । ପ୍ରଣୟୀ ପ୍ରଣୟିନୀ ଏକ ସମୟରେ ମନେ ମନେ କହିଲେ— 'କନ୍ୟାଦାନରେହିଁ ଏ ଋଣ ସୁଝିପାରିବୁ ସର୍ଦ୍ଦାର !'

ପରେ ଉମାଜୀ କନ୍ୟାକୁ ଧରି ରତ୍ନାକରଙ୍କ ସଙ୍ଗେ ଚ୍ୟବନଙ୍କ ନିକଟକୁ ଗଲା । ପିତା ପୁତ୍ରୀ ମୁନି ଓ ମୁନିପତ୍ନୀଙ୍କି ପ୍ରଣିପାତ କଲେ । ସର୍ଦ୍ଦାର ଏ ଦୁର୍ଘଟଣା ବର୍ଣ୍ଣନା କରି ଋଷିପୁତ୍ରଙ୍କର ଖୁବ୍ ପ୍ରଶଂସା କଲା । ଚ୍ୟବନ ଓ ସୁକନ୍ୟା ବିସ୍ମିତ ହୋଇ ମନେ ମନେ ପୁତ୍ରର ସାହସ, ପରୋପକାରକୁ ପ୍ରଶଂସା କଲେ । ଉମାଜୀ ବିଦାୟ ନେଇ କନ୍ୟା ଓ ଅନୁଚର ସହିତ ନୌକାରେ ଘରକୁ ଫେରିଲା । ମାତଙ୍ଗୀ ରତ୍ନାକର ନିକଟରେ ମନ ପ୍ରାଣ ରଖି, ରତ୍ନାକରଙ୍କ ହୃଦୟ ଅପହରଣ କରି ଗୃହକୁ ଗଲା । ଋଷିକୁମାର ପିତାଙ୍କ ନିଦେଶରେ ଆଶ୍ରମର ସାନ୍ଧ୍ୟ କର୍ମରେ ପ୍ରବୃତ୍ତ ହେଲେ ।



୪

ରତ୍ନାକର ଜପ ତପ, ହୋମ ଧ୍ୟାନ ସବୁ କରୁଛନ୍ତି, ତେବେ ପୂର୍ବ ପରି ନିଷ୍ଠା, ଏକାଗ୍ରତା ସହକାରେ ନୁହେ । ତାଙ୍କର ପ୍ରତିଦିନ ଆଧ୍ୟାତ୍ମିକ ସାଧନାରେ, ବୈଦିକ ଅନୁଷ୍ଠାନରେ ପଦେ ପଦେ ବିଘ୍ନ ହେବାକୁ ଲାଗିଲା । ଈଶ୍ୱର-ଧ୍ୟାନ ବଦଳରେ ମାତଙ୍ଗୀ-ଧ୍ୟାନ ତାଙ୍କ ମନ ପ୍ରାଣ ଅଧିକାର କରି ବସିଲା । ଦିବାରାତ୍ରି ମାତଙ୍ଗୀ-ରୂପ-ଚିନ୍ତାରେ ବୁଡ଼ି ରହିଲେ । ଆଶ୍ରମକର୍ତ୍ତବ୍ୟରେ, ସତୀର୍ଥଙ୍କ ସହ ବ୍ୟାୟାମ କ୍ରୀଡ଼ା ଇତ୍ୟାଦି କାର୍ଯ୍ୟରେ ତାଙ୍କର ଅବହେଳା, ଉଦାସୀନତା ଦେଖି ଚ୍ୟବନ ଭାବିତ ହେଲେ । ସେ ଅନେକ ସମୟରେ ପୁତ୍ରଙ୍କୁ ଅନ୍ୟମନସ୍କ, ବିଷଣ୍ଣ ଦେଖି ବିସ୍ମିତ ହେଲେ । କେବଳ ସେ ନୁହନ୍ତି, ସୁକନ୍ୟା ମଧ୍ୟ ରତ୍ନାକରଙ୍କର ନୂତନ ଗୂଲ ଚଳନ ଲକ୍ଷ୍ୟ କରୁଥିଲେ । ପତି ପତ୍ନୀ ପୁତ୍ରଙ୍କର ଏ ଅପୂର୍ବ ଆଚରଣରେ ବ୍ୟସ୍ତ ହୋଇ ପଡ଼ିଲେ । ସୁକନ୍ୟା ଋଷିଙ୍କି କହିଲେ, ଭିଲ ବାଳକାକୁ ଜଳରୁ ଉଦ୍ଧାର କରିବା ଦିନୁଁ କେଜାଣି କାହିଁକି ପୁତ୍ରର କାର୍ଯ୍ୟକଳାପରେ କିଛି ପରିବର୍ତ୍ତନ ଆସିଛି । ଦୁହିଁଙ୍କ ମନକୁ ସନ୍ଦେହ ଆକ୍ରମଣ କଲା । ସେମାନଙ୍କର ଆଶଙ୍କା ହେଲା, ସେମାନଙ୍କ ଅନୁମାନ ଠିକ୍ ହୋଇଥିଲେ ଆଉ ରକ୍ଷା ନାହିଁ—ମହତ୍ତ୍ୱ ଯିବ, ଋଷିକୁଳରେ କଳଙ୍କ ଲାଗିବ ।

ଚ୍ୟବନ ଦୈନନ୍ଦିନ କର୍ମରେ ରତ୍ନାକରଙ୍କର ପୂର୍ବ ଐକାନ୍ତିକତା, ନିଷ୍ଠା ଫେରାଇ ଆଣିବାକୁ ଯଥାସାଧ୍ୟ ଚେଷ୍ଟା କଲେ । ସେ ସକାଳେ, ସନ୍ଧ୍ୟାରେ ପୁତ୍ରଙ୍କୁ ପାଖରେ ବସାଇ ଧର୍ମଶାସ୍ତ୍ରାଲୋଚନା, ବେଦାନ୍ତ-ବିଷୟକ ଯୁକ୍ତି ତର୍କ କରିବାକୁ ଲାଗିଲେ । ତଥାପି ରତ୍ନାକରଙ୍କ ମନର, କାର୍ଯ୍ୟର ପରିବର୍ତ୍ତନ ହେଲା ନାହିଁ । ଯେଉଁ ମନ ଥରେ ବିଚଳିତ ହୋଇଅଛି, ତାହାକୁ ପୂର୍ବ ଅବସ୍ଥାକୁ ଲେଉଟାଇ ଆଣିବା ସହଜ କଥା ନୁହେ । ସେ ଯେ ପ୍ରଣୟପୀଡ଼ିତ, ମଦନବିକାରଗ୍ରସ୍ତ । ତାଙ୍କୁ ପୁନର୍ବାର

ସତ୍ ପଥକୁ ଆଣିବାକୁ ଚ୍ୟବନ ଚେଷ୍ଟାରେ ତ୍ରୁଟି କଲେ ନାହିଁ, ତଥାପି ବିଫଳମନୋରଥ ହୋଇ ପ୍ରମାଦ ଗଣିଲେ ।

ତମସାତୀରର ଯେଉଁ ସ୍ଥାନରେ ବସି ରତ୍ନାକର ଭଗବଦ୍‌ଭକ୍ତି, ଦେବୋପାସନା ଶିଖି ଥିଲେ, ସେଠାରେ ବର୍ତ୍ତମାନ ସେ ପ୍ରଣୟ ଶିକ୍ଷା କରୁଛନ୍ତି । ସ୍ଥାନଟି ଏବେ ତାଙ୍କର ପ୍ରଣୟ-ପୀଠ । ଏହି ସ୍ଥାନକୁ ପ୍ରତ୍ୟହ ମାତଙ୍ଗୀ ଆସିବାକୁ ଲାଗିଲା । ଆଗେ ଆଗେ ପ୍ରାତଃ କାଳରେ, ପରେ ସକାଳ ସନ୍ଧ୍ୟା ଦୁଇ ଥର ଆସିବାକୁ ଲାଗିଲା । ତମସାର ଏ ପାର୍ଶ୍ୱରେ ଚ୍ୟବନାଶ୍ରମ, ପର ପାର୍ଶ୍ୱରେ ଭୂମାଳୀର ପଲ୍ଲୀ । ଅତଏବ ପ୍ରତ୍ୟହ ଦୁଇଥର ଯିବା ଆସିବା କରିବା ବାଳିକା ପକ୍ଷରେ କଷ୍ଟକର ନୁହେ ।

କାମୁକ ରତ୍ନାକର ପ୍ରତିଦିନ ସନ୍ଧ୍ୟା ପୂଜା ସାରି କମ୍ପା ପାସୋରି ମାତଙ୍ଗୀକୁ ଅପେକ୍ଷା କରି ରହନ୍ତି । ବାଳିକା ହସି ହସି ପହଞ୍ଚିବା ମାତ୍ରକେ ସେ ନିଜର ଅର୍ଦ୍ଧ ସମାପ୍ତ ବା ଅସମାପ୍ତ ପୂଜା ଅନୁଷ୍ଠାନାଦି ଛାଡ଼ି ହସହସ ମୁଖରେ ପ୍ରଣୟିନୀକୁ ପ୍ରେମାଲିଙ୍ଗନ କରନ୍ତି । ଦୁହେଁ ବସି ବହୁ ସମୟ ମଧୁର ଆଳାପରେ ବୁଡ଼ି ରହନ୍ତି, କେବେ କେବେ ବନ ବିହାର, ଜଳ-ବିହାରରେ ସମୟ ନିଅନ୍ତି । କେବେ ନଦୀ ବକ୍ଷରେ ନୌକା ଉପରେ, କେବେ ନଦୀ ତୀରରେ, କେବେ ବା ବୃକ୍ଷ ମୂଳରେ, କେବେ ବା ବୃକ୍ଷ-ଶାଖାରେ ବସି ରହନ୍ତି — ମାତଙ୍ଗୀ ରତ୍ନାକରଙ୍କ କୋଳରେ ବସି ବା ଶୋଇ ପରମ ପ୍ରେମରେ ଅନାର୍ଯ୍ୟ ସଙ୍ଗୀତ-ଲହରୀ ଖେଳାଇ ଦିଏ । ରତ୍ନାକରଙ୍କ ଆନନ୍ଦ କହିଲେ ନ ସରେ ! ସେହି ସଙ୍ଗୀତ-ଧ୍ୱନିରେ ତମସା ଓ ପକ୍ଷିକୁଳ ନିଜ ନିଜର ଗାନ ମିଳାଇ ଦୁହିଁଙ୍କର ପ୍ରଣୟ, ମିଳନ ଉପରେ ସମର୍ଥନ କରନ୍ତି । କେବେ କେବେ ରତ୍ନାକର ମାତଙ୍ଗୀକୁ ସରଳ ଭାବରେ ଋଷିମାନଙ୍କର ହୋମ, ମନ୍ତ୍ର ଇତ୍ୟାଦି ବିଷୟ ବୁଝାଇ ଦିଅନ୍ତି ।

ତମସା ତୀରରେ ରତ୍ନାକର, ମାତଙ୍ଗୀ ଭିନ୍ନ, ଅସଂଖ୍ୟ ପକ୍ଷୀ ବ୍ୟତୀତ ଆଉ କେହି ନ ଥାଏ । ସପ୍ତଗ୍ରାମ ପରିସ୍ତ କରି ବିହଗକୁଳ କଣ୍ଠ-ଧ୍ୱନିରେ ବହୁଦୂରବିସ୍ତୃତ ବନପ୍ରଦେଶ ମୁଖରିତ କରୁଥିଲେ । ଶାଳ ତମାଳ ମହୁଲ ପ୍ରଭୃତି ଅସଂଖ୍ୟ ବୃକ୍ଷ ତମସାତଟ ପର୍ଯ୍ୟନ୍ତ ସବୁଜ ସତରଞ୍ଜି ପରି ବିସ୍ତୃତ— ଉପରକୁ ମଥା ଟେକି ଏକ ବିଶାଳ ପୁରୀ ନିର୍ମାଣ କରି-ଥିଲେ । ଅଗଣ୍ୟ ଫଳ, ଅଗଣ୍ୟ ପୁଷ୍ପ ବୃକ୍ଷ ଦେହରୁ ଝୁଲି ରହିଥିଲେ । ଏହି ପ୍ରକାଣ୍ଡକାୟ ପୁରୀ ଅସଂଖ୍ୟ କୀଟ ପତଙ୍ଗ, ଅସଂଖ୍ୟ ପଶୁ ପକ୍ଷିଙ୍କ ଦ୍ୱାରା ସତତ ସଜୀବିତ ହୋଇ ରହିଥିଲା । ଉପରେ ପତ୍ର-ଚନ୍ଦ୍ରାତପ, ତାହା ଉପରେ ନୀଳ ନିର୍ମଳ ଆକାଶ-ଚନ୍ଦ୍ରାତପ । ଏହି ରମ୍ୟ ସ୍ଥାନରେ ବସି, ବିହାର କରି ନୂତନ ପ୍ରଣୟୀ ପ୍ରଣୟିନୀ ପରସ୍ପର ଆଲିଙ୍ଗନ ଚୁମ୍ବନ ସହ ପ୍ରଣୟାଲାପରେ ମାତନ୍ତି—ମାତି ଅସ୍ମୃହାସ୍ୟ, ବାହ୍ୟଜ୍ଞାନରହିତ ହୁଅନ୍ତି । ଉଭୟେ ମିଶି କେବେ କେବେ ପୁଷ୍ପଚୟନ କରନ୍ତି । ରତ୍ନାକର ମାତଙ୍ଗୀର କେଶ ଓ କଣ୍ଠରେ, ମାତଙ୍ଗୀ ଯୁବକଙ୍କ କେଶ ଓ କଣ୍ଠରେ ଫୁଲ ଗୁଞ୍ଜି-ଦେଇ ତନ୍ମୟ ହୋଇ ଉଠନ୍ତି । କେବେ କେବେ ରତ୍ନାକର ମାତଙ୍ଗୀ ଗଳାରେ ନିଜ ରୁଦ୍ରାକ୍ଷମାଳା ଲମ୍ବାଇ, ତାହାର କୋଳରେ ଶୋଇ 'ସନ୍ନ୍ୟାସିନି' ସମ୍ବୋଧନ କରନ୍ତି । ସେତେବେଳେ ଦୁହିଁଙ୍କ ହାସ୍ୟର ସୀମା ରହେ ନାହିଁ ।

ପିତାଙ୍କ ପାଇଁ ହୋମକାଷ୍ଠ ଅହରଣରେ, ପୂଜା ପାଇଁ ପୁଷ୍ପ-ଚୟନରେ ମାତଙ୍ଗୀ ରତ୍ନାକରଙ୍କୁ ସାହାଯ୍ୟ କରୁଥିଲା । ସେ ପଲ୍ଲିରୁ ଆସିବାବେଳେ କେବେ କେବେ ନିଜ ଦେବତାଙ୍କ ପାଇଁ ଫୁଲମାଳା, ଦେବତାଙ୍କର ଦେବତା-ପୂଜା ପାଇଁ ଫୁଲ ସଙ୍ଗେ ନେଇ ଆସୁଥିଲା । ଏପରି ପ୍ରେମ କୌତୁକରେ, ମଉଜ ମଜଲିସରେ ଦୁହେଁ ଦିନ କଟାଇ-ବାକୁ ଲାଗିଲେ । ଦିନକୁ ଦିନ ଉଭୟଙ୍କର ପରସ୍ପର ପ୍ରଣୟ ଅନୁରାଗ ଗାଢ଼ରୁ ଗାଢ଼ତର ହୋଇ ଉଠିଲା ।

ପୁତ୍ରଙ୍କୁ ବାଳକା ସଙ୍ଗେ ଆଳାପ କରିବାର ଦୁଇ ତିନ ଥର ଦେଖି ଚ୍ୟବନ କ୍ରୁଦ୍ଧ ହୋଇ ଉଠିଲେ । ରତ୍ନାକରଙ୍କୁ ବହୁତ ଭର୍ତ୍ସନା କଲେ, ଅଭିଶାପର ଭୟ ଦେଖାଇଲେ । ରତ୍ନାକର ଖାଲି ତୁନି ହୋଇ ରହନ୍ତି— ପିତାଙ୍କ ଗାଳି, ଉପଦେଶ ବା ଅଭିଶାପ-ଭୀତି-ପ୍ରଦର୍ଶନ ପ୍ରତି ତିଳମାତ୍ର ଭ୍ରୂକ୍ଷେପ କରନ୍ତି ନାହିଁ । ମୁନି, ମୁନିପତ୍ନୀ ତାଙ୍କୁ ମାତଙ୍ଗୀ ସହିତ ସମ୍ପର୍କ ନ ରଖିବା ସକାଶେ କେତେ ପ୍ରାର୍ଥନା କଲେ— ସବୁ ବ୍ୟର୍ଥ ହେଲା ।

ପୂର୍ବାକାଶର ପ୍ରାନ୍ତଭାଗ ଗାଢ଼ ଲୋହିତବର୍ଣ୍ଣରଞ୍ଜିତ ହୋଇ ଅଛି । ଉଷାଦେବୀ ପୂର୍ବ ଗଗନର ସ୍ୱର୍ଣ୍ଣ ଜଳଦ-ସୋପାନରେ ଧୀର ପଦ ବିକ୍ଷେପରେ ସହାସ୍ୟ ମୁଖରେ ଉଠୁଛନ୍ତି । ପ୍ରଭାତ ସୂର୍ଯ୍ୟଙ୍କ ପରିପ୍ଳବ ହେମ-ରଶ୍ମି ଚତୁର୍ଦ୍ଦିଗରେ ବିସ୍ତୃତ । ରତ୍ନାକର ସ୍ନାନ ସାରି ତମସା ତୀରରେ ଠିଆ ହୋଇ ସୂର୍ଯ୍ୟ-ବନ୍ଦନା କଲେ—

"ବିଶ୍ୱନୟନ ରବି ! ପାବନ ଦୀପ୍ତି-ରଶ୍ମି—
ଦ୍ରୁତଗ, ଜ୍ୟୋତିର ଛବି, ଆଲୋକେ ପୋଷିଛ ଧରା;
ଦେବତା ସମ୍ମୁଖେ ହସ, ମାନବ ସମ୍ମୁଖେ ଆସ—
ବନ୍ଦେ ତପନଦେବ ! ଦିବ୍ୟ ଜ୍ୟୋତିରେ ଭାସ ।"

ଠିକ୍ ଏ ସମୟରେ ମାତଙ୍ଗୀ ସେଠାରେ ଆସି ଉପସ୍ଥିତ । ଦୁହେଁ ବସି ନାନା କଥାବାର୍ତ୍ତା କଲେ । ପ୍ରସଙ୍ଗକ୍ରମେ ଭିଲ ବାଳକା ପଚାରିଲା—
"ହୋମ ବୋଇଲେ କଣ ?"

ରତ୍ନାକର—ଦେବତାମାନଙ୍କୁ ପ୍ରସନ୍ନ କରିବା ପାଇଁ ସେମାନଙ୍କୁ ଯେଉଁ ସବୁ ଉପହାର ଦେବାକୁ ହୁଏ, ସେହି ଉପହାର ଦାନର ନାମ ହୋମ । ଏ ଉପହାର ଭିନ୍ନ ଭିନ୍ନ ପ୍ରକାର । ଅଗ୍ନି-ହୋମ

କରିବାକୁ ହେଲେ ପଳାଶ, ଖଇର, ରକ୍ତଚନ୍ଦନ, ପିପ୍ପଳ କାଠ, କୁଶର, କଳାତିଳ, ଯବ, ଗୁଗ୍ଗୁଳ, ଆଖୁ, ଘିଅ, ଖଜୁରି, ଆଉ ଆଉ ପଦାର୍ଥ ଅଗ୍ନିରେ ଆହୁତି ଦେବାକୁ ପଡ଼େ ।

ମାତଙ୍ଗୀ— ହୋମ କେତେ ଭଳିଆ ?

ରତ୍ନାକର— ଭିନ୍ନ ଭିନ୍ନ ଉପଲକ୍ଷରେ ଭିନ୍ନ ଭିନ୍ନ ହୋମ କରା ଯାଇ ଥାଏ ।

ମାତଙ୍ଗୀ— 'ମନ୍ତ୍ର' ବୋଇଲେ କଣ ?

ରତ୍ନାକର—ପଣ୍ଡିତମାନେ ମନ୍ତ୍ର, ଯନ୍ତ୍ର, ତନ୍ତ୍ର— ଏ ତିନୋଟି ଶବ୍ଦ ପ୍ରୟୋଗ କରନ୍ତି । ବେଦର ଶ୍ଳୋକକୁ ମନ୍ତ୍ର ବୋଲାଯାଏ— ସେଥିରେ କେଉଁ ଦେବତାଙ୍କ ନାମ ଯୁକ୍ତ ହୋଇଥାଏ । ଇଚ୍ଛା କରିବା ପଦାର୍ଥ ପାଇବା ନିମନ୍ତେ ଯେଉଁ କେତୋଟି ଅଙ୍କ ବ୍ୟବହାର କରିବାକୁ ହୁଏ, ତାହାକୁ 'ଯନ୍ତ୍ର' କହନ୍ତି । ତନ୍ତ୍ର ବୋଇଲେ ଏକ ପ୍ରକାର ଔଷଧ । ଏହା ଦେହର କୌଣସି ଭାଗରେ ଲଗାଇଲେ ସେଥିରେ କେବେ କୌଣସି ଆଘାତ ଲାଗିଯାରେ ନାହିଁ ।





ଦିନେ ମଧ୍ୟାହ୍ନରେ ନଦୀତୀରରେ ବୃକ୍ଷତଳେ ଗୋଟିଏ ପ୍ରସ୍ତର ଉପରେ ମାତଙ୍ଗୀ ଉପବିଷ୍ଟା—ତାହାର କୋଳରେ ମସ୍ତକ ନ୍ୟସ୍ତ କରି ରତ୍ନାକର ଶାୟିତ । ନିକଟରେ ଅନ୍ୟ କେହି ନାହିଁ । ସମ୍ମୁଖରେ ତମସା କଳ କଳ ନାଦରେ ପ୍ରବାହିତା—ସ୍ୱାମି-ସମ୍ମିଳିତା ଯୁବତୀ ଭଳି ଆନନ୍ଦ ଓ ଗର୍ବରେ ସ୍ଫୀତା ହୋଇ ଦ୍ରୁତ ବେଗରେ ପ୍ରବାହିତା । ଦୁହିଁଙ୍କ ଅଧରରେ ମୃଦୁ ମଧୁର ହାସ୍ୟ । ରତ୍ନାକରଙ୍କ ଗଣ୍ଡଦେଶରେ ମାତଙ୍ଗୀ ଚମ୍ପକକଳି ସଦୃଶ ସୂକ୍ଷ୍ମ, ସୁନ୍ଦର ଅଙ୍ଗୁଳିନିଚୟ ସଂଚାଳନ କରୁଅଛି । ଏପରି ସମୟରେ ଆକାଶ ସହସା ଘନକୃଷ୍ଣ ମେଘରେ ଆଛନ୍ନ ହୋଇଗଲା । ଦୁହେଁ ଅନେକ ମେଘ ଦେଖିଛନ୍ତି, କିନ୍ତୁ ଏପରି ଭୟଙ୍କର ମେଘ କେବେ ଦେଖି ନାହାନ୍ତି । ଅନନ୍ତବ୍ୟାପୀ ବାରିଦମାଳା ଯେପରି ପୃଥିବୀର ଏକ ପ୍ରାନ୍ତରେ ଜାତ ହୋଇ ଅପର ପ୍ରାନ୍ତରେ ପର୍ବତ ବକ୍ଷରେ ଢଳି ପଡ଼ୁଅଛି । ମେଘ କ୍ରମେ ବିସ୍ତୃତ ହୋଇ ସମସ୍ତ ଆକାଶ ସମାଚ୍ଛନ୍ନ କରି ପକାଇଲା । ମେଘ ଦେହରେ କେଉଁଠି ଛିଦ୍ର ନାହିଁ, ଆଲୋକ ନାହିଁ—ମଧ୍ୟାହ୍ନକାଳୀନ ସୂର୍ଯ୍ୟ, ଆକାଶ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ । ଏହି ଦୃଶ୍ୟରେ ଦୁହିଁଙ୍କ ପ୍ରାଣରେ ଭୀତିର ସଞ୍ଚାର ହେଲା । ସେ ଭୀତି କିନ୍ତୁ ବେଶୀ ସମୟ ରହିଲା ନାହିଁ । କିଛି ସମୟ ପରେ ମେଘ କେଉଁଆଡ଼େ ଉଭେଇ ଗଲା; ସୂର୍ଯ୍ୟ, ଆକାଶ ପୁଣି ଉଜ୍ଜ୍ୱଳ ଦେଖାଗଲେ ।

ମାତଙ୍ଗୀ କହିଲା—"ଉଃ ମେଘ ଦେଖି ଡର ମାଡୁଥିଲା । ମେଘ ଆଉ ନାହିଁ ।"

ରତ୍ନାକର—ସବୁବେଳେ ରହିବ ମନେ କରିଥିଲ ମାତଙ୍ଗି ? ଆଲୋକ ପରେ ଅନ୍ଧାର, ଅନ୍ଧାର ପରେ ଆଲୋକ, ବର୍ଷା ପରେ ଶରତ୍,

ଖରା ପରେ ବର୍ଷା ବରାବର ହୋଇଥାଏ । ଅନ୍ଧକାର ବେଶୀ ସମୟ ରହେ ନାହିଁ—ବାଧା ବିଘ୍ନ ବେଶୀ କାଳ ତିଷ୍ଠି ପାରେ ନାହିଁ । ସୂର୍ଯ୍ୟ ଦେବତାଙ୍କ କାର୍ଯ୍ୟରେ, ଗଗନରେ ମେଘ ହେଉଛି ପ୍ରଧାନ ବିଘ୍ନ । ସୂର୍ଯ୍ୟ ଜଗତକୁ ଆଲୋକ ଦେବାକୁ ଚାହୁଁଛନ୍ତି, ମେଘ ବାଧା ଦେଉଛି । ଏ ବାଧା କିନ୍ତୁ କେତେ କାଳ ? ଦେଖୁଛ ସୁନ୍ଦର, ତୁମର ମୋର ପ୍ରେମରେ ବାପା କେତେ ବାଧା ଦେଉଛନ୍ତି । ଅଥଚ ବାଧା ବିଘ୍ନ ଲଙ୍ଘନ କରି ଆମ ପ୍ରେମ ସ୍ନେହ ବରାବର ଚାଲିଛି । ନଦୀ ଆନନ୍ଦରେ ଅଧୀର ହୋଇ ପ୍ରେମରେ ଫୁଲି ଚାଲିଛି । ବାଲିବନ୍ଧ କଣ ତାହାର ଗତିରୋଧ କରିପାରେ ? ହେଲା ଥାଉ ସେ କଥା । କହ ମାତଙ୍ଗି, ତୁମେ ମୋତେ କଣ ହୃଦୟ ସହିତ ଭଲ ପାଅ, ପ୍ରେମ କର ?

ମାତଙ୍ଗୀ ସହାସ୍ୟ ମୁଖରେ, ସଲଜ୍ଜ ନୟନରେ କହିଲା—'କେତେ ଥର କହିବି, ସୁନ୍ଦର ?'

ରତ୍ନାକର—କଥା, ଗୃଦାଣୀ, ଆଚରଣରେ ମନର ଭାବ ଅବଶ୍ୟ ଜଣାଇଛ । ତେବେ ତୁମ ମୁଖରୁ କେବେ ଶୁଣି ନାହିଁ । କହ ପ୍ରିୟେ ! ମୋତେ ହୃଦୟ ସହ ପ୍ରେମ କର ?

ମାତଙ୍ଗୀ— କରେଁ ।

ରତ୍ନାକର—ଆଉ କାହାକୁ ପ୍ରେମ କର ନାହିଁ ?

ମାତଙ୍ଗୀ ତୀକ୍ଷ୍ଣ କଟାକ୍ଷପାତ କରି ଉତ୍ତର କଲା— 'ନା' ।

ରତ୍ନାକର—ଉପରେ ନୀଳ ଆକାଶ, ତା' ଉପରେ ଭଗବାନ— ତୁମେ ସତ୍ୟ କହୁଛ ?

ମାତଙ୍ଗୀ ପତି-ମିଳନାତୁର ତମସା ପ୍ରତି ଥରେ ଦୃଷ୍ଟିପାତ କରି କହିଲା—'ସତ୍ୟ କହୁଛି'।

ଏ କଥାରେ ରତ୍ନାକରଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ହେଲା। ସେ ସହାସ୍ୟ ବଦନରେ ପ୍ରେମାର୍ଦ୍ର କଣ୍ଠରେ ପ୍ରଶ୍ନ କଲେ—'ମାତଙ୍ଗି, ମୋତେ ବିବାହ କରିବ ?'

ମାତଙ୍ଗୀ ହଠାତ୍ ଉତ୍ତର ନ କରି କିଛି କ୍ଷଣ ସଲଜ୍ଜ ସହାସ୍ୟ ଦୃଷ୍ଟିରେ ଯୁବକଙ୍କ ମୁଖକୁ ଅନାଇଁ ରହିଲା। ପରେ କହିଲା— 'କରିବି, ମାତ୍ର—'

ରତ୍ନାକର—ମାତ୍ର କଣ ମାତଙ୍ଗି ?

ମାତଙ୍ଗୀ—ମୁଁ ଯେ ନୀଚ ଜାତିର କନ୍ୟା, ଅଛୁଆଁ ଜାତିର ପିଲା। ତୁମେ ଉଚ୍ଚ ଜାତିର, ଋଷିକୁମାର—ମୋତେ ତୁମେ ବିବାହ କରିବ କି ନା ଭାବୁଚ।

ରତ୍ନାକର—ଭୁଲ ବୁଝିଚ। ପ୍ରେମ-ଶାସ୍ତ୍ରରେ ଜାତିଭେଦ ନାହିଁ। ପ୍ରଣୟ-ଜଗତରେ ସବୁ ଦୁଇ ଜାତି—ପୁରୁଷଜାତି, ସ୍ତ୍ରୀଜାତି। ପୁରୁଷ ସ୍ତ୍ରୀକୁ ବିବାହ କରେ, ସ୍ତ୍ରୀ ପୁରୁଷକୁ ବିବାହ କରେ। ଅବଶ୍ୟ ବ୍ରାହ୍ମଣମାନେ ସ୍ୱାର୍ଥରେ, ଗର୍ବରେ ଅନ୍ଧ ହୋଇ କେତେ ଜାତିକି ଅଛୁଆଁ କରି ରଖିଛନ୍ତି। ଏ ନୀଚ, ସଂକୀର୍ଣ୍ଣ ଭାବ ମୂର୍ଖର—ଜ୍ଞାନର ନୁହେ। ସମସ୍ତଙ୍କ ହୃଦୟରେ ଭଗବାନ ଅଛନ୍ତି। ଭଗବାନଙ୍କୁ ତେବେ କଣ ଛୁଇଁବା ପାପ ? ଅଛୁଆଁ ଭାବ ମନର ବିକାର ମାତ୍ର। ଜ୍ଞାନ ବଳରେ ଯେ ମନରୁ ଏ ବିକାର ଘୁଞ୍ଚାଇ ଦିଏ, ସେ ସମସ୍ତଙ୍କୁ ଛୁଏଁ, ଆନନ୍ଦରେ ଆଲିଙ୍ଗନ କରେ। ତୁମେ ମୋର ଅସ୍ପୃଶ୍ୟା

ନୁହ ସୁନ୍ଦର ! ତୁମକୁ ଛୁଇଁଛି, ଚିର ଦିନ ଛୁଇଁବି । ତୁମକୁ କୋଳରେ ବସାଇଛି, ତୁମ କୋଳରେ ଶୋଇଛି—ଚିର-କାଳ ବସାଇବି, ଶୋଇବି । ବୁଝିଲ ?

ମାତଙ୍ଗୀ—ବୁଝିଲି । କିନ୍ତୁ ଏ ବିବାହରେ ତୁମ ପିତା ମାତା ରାଜି ହେବେ ?

ରତ୍ନାକର—ନ ହୁଅନ୍ତୁ—ମୁଁ ତ ହୋଇଛି ।

ମାତଙ୍ଗୀ—ବିବାହ ଆଗରୁ ସେମାନଙ୍କର ଅନୁମତି ନେବ ନାହିଁ ?

ରତ୍ନାକର—ଅନୁମତି ନେବା ଦରକାର ନାହିଁ ସୁନ୍ଦରି ! ସେମାନଙ୍କ ଭାବ ବୁଝି ପାରିଛି । ସେମାନେ ଏ କାର୍ଯ୍ୟରେ ବାଧା ଦେଉଛନ୍ତି, ଦେବେଇ ଦେବେ । ବେଶୀ ଭାବି ଚିନ୍ତି ସ୍ଥିର କରିଛି, ଏ ବିଷୟରେ ପିତାମାତାଙ୍କର ଅନୁମତି ଗ୍ରହିଁବି ନାହିଁ । ମୋର ମନ ଓ ବିବେକ ମଧ୍ୟରେ ଢେର ବିବାଦ ହୋଇ ଯାଇଛି । ବିବେକ କହେ—ପିତାମାତାଙ୍କୁ ଛାଡ଼ ନାହିଁ, ବ୍ରାହ୍ମଣତ୍ୱ ଛାଡ଼ ନାହିଁ । ମନ କହେ—ମାତଙ୍ଗୀକି ଛାଡ ନାହିଁ ; ଦରକାର ହେଲେ ପିତାମାତାଙ୍କୁ ଛାଡ଼, ବ୍ରାହ୍ମଣତ୍ୱରେ ପଦାଘାତ କର । ଶେଷରେ ମନ ଜୟୀ ହୋଇଅଛି—ସ୍ଥିର କରିଛି, ତୁମକୁ ବିବାହ କରିବି ପିତାମାତା ଓ ବ୍ରାହ୍ମଣତ୍ୱ ବର୍ଜ୍ଜନ କରିବି ।

ମାତଙ୍ଗୀର ମୁଖ ପ୍ରଫୁଲ୍ଲ ହୋଇ ଉଠିଲା ।



୬

ଅରଣ୍ୟବାସୀ, ପାର୍ବତ୍ୟ ଜାତିମାନଙ୍କ ମଧ୍ୟରେ ସ୍ୱୟମ୍ବର ପ୍ରଥା ପ୍ରଚଳିତ ଥିଲା । ରାଜକନ୍ୟାମାନଙ୍କ ପରି, ଭିଲ, ଶବର ପ୍ରଭୃତି ଅନାର୍ଯ୍ୟ ଜାତିର କୁମାରୀମାନେ ଇଚ୍ଛାନୁସାରେ ସ୍ୱାଧୀନଭାବରେ ପତି ବରଣ କରୁଥିଲେ । ପିତାମାତା ବା ଅଭିଭାବକମାନେ ସେମାନଙ୍କୁ ପତି-ନିର୍ବାଚନରେ ପୂର୍ଣ୍ଣ ଅଧିକାର ଦେଉଥିଲେ । ସେମାନଙ୍କ ସ୍ୱୟମ୍ବର ଉତ୍ସବ ଅବଶ୍ୟ ରାଜକନ୍ୟାଗଣଙ୍କ ସ୍ୱୟମ୍ବର ପରି ଆଡ଼ମ୍ବରରେ ହେଉ ନ ଥିଲା । ଆଜି କାଲି ମଧ୍ୟ ଅରଣ୍ୟ ବା ପର୍ବତବାସୀ ଭିଲ, ସାନ୍ତାଳ, କୋନ୍ଧ, କନ୍ଧ, ସଉରା ପ୍ରଭୃତି ଅସଭ୍ୟ ଅନାର୍ଯ୍ୟ ଜାତିର କନ୍ୟାମାନେ ମନମୁତାବକ ପତି ବାଛି ଥାଆନ୍ତି ।

ପ୍ରତି ଭିଲ ପଲ୍ଲୀର ମଧ୍ୟଭାଗରେ ଗୋଟିଏ ପ୍ରକାଣ୍ଡ ଗୃହ ନିର୍ମିତ ହେଉଥିଲା । ତାହା ପଲ୍ଲୀର ସମସ୍ତ ଯୁବକ ଯୁବତୀଙ୍କ ପାଇଁ ଉଦ୍ଦିଷ୍ଟ । ପ୍ରତ୍ୟହ ରାତ୍ରି ଭୋଜନ ପରେ ପଲ୍ଲୀର ଅବିବାହିତ ଯୁବକ ଯୁବତୀମାନଙ୍କୁ ସେହି ଗୃହରେ ରହିବାକୁ ହେଉଥିଲା । ବେଶୀ ରାତ୍ରି ଯାଏ ସେମାନେ ପ୍ରେମାଳାପ, କ୍ରୀଡ଼ା କୌତୁକ, ମଉଜ ମଜଲିସ୍ କରନ୍ତି । ପ୍ରତ୍ୟହ ଏପରି ଦେଖା ସାକ୍ଷାତ୍ ସ୍ନେହାଳାପ ଫଳରେ ଯେଉଁ ଦୁଇ ଯୁବକ ଯୁବତୀଙ୍କ ମଧ୍ୟରେ ପ୍ରକୃତ ପ୍ରଣୟ ଜନ୍ମେ, ସେମାନେ ବିବାହବନ୍ଧନରେ ବଦ୍ଧ ହୁଅନ୍ତି । କେବଳ ଏ ପଲ୍ଲୀଗୃହରେ ନୁହେ, କୁମାର କୁମାରୀମାନେ ଅନ୍ୟାନ୍ୟ ସ୍ଥାନରେ ଅନ୍ୟାନ୍ୟ ସମୟରେ ମଧ୍ୟ ପୁନଃ ପୁନଃ ସାକ୍ଷାତ୍, ଆଳାପ ଫଳରେ ପରସ୍ପର ପ୍ରେମରେ ଆକୃଷ୍ଟ ହେଉଥିଲେ ।

ସାଧାରଣରେ ବାଳିକା ଥରେ ଜଣକୁ ପତିରୂପେ ଗ୍ରହଣ କଲେ, ତାହାକୁ ତ୍ୟାଗ କରୁ ନ ଥିଲା, ଅନ୍ୟ ଯୁବକକୁ ହୃଦୟ ଦେଉ ନ ଥିଲା । ଯୁବତୀ **ଯଦି** କୌଣସି ଗୁରୁତର କାରଣରୁ ନିର୍ବାଚିତ ପତିଙ୍କ ଛାଡ଼ି ଅନ୍ୟ

ପତି ପସନ୍ଦ କଲେ, ତାହାହେଲେ କେହି ତା' ଇଚ୍ଛା ବିରୁଦ୍ଧରେ ଯାଆନ୍ତି ନାହିଁ—ତାହାର କାର୍ଯ୍ୟରେ ବାଧା ଦିଅନ୍ତି ନାହିଁ ।

ପିତାମାତାଙ୍କ ନିର୍ବାଚିତ ପାତ୍ର ଗ୍ରହଣ କରିବାକୁ କନ୍ୟା ବାଧ୍ୟ ନ ଥିଲା । କନ୍ୟା ପତି ବାଛିବା ପରେ ପିତାମାତା ଯଦି ଧନ ଲୋଭରେ କିମ୍ବା ଅନ୍ୟ କାରଣ ଦୃଷ୍ଟିରେ ଆଉ କାହା ସହିତ କନ୍ୟାର ବିବାହ ଦେବାକୁ ଚାହାନ୍ତି, ତାହାହେଲେ ସେମାନେ କନ୍ୟାର ଆନ୍ତରିକ ଅନୁମତି, ପରାମର୍ଶ ନ ନେଇ ସେମାନଙ୍କ ଇଚ୍ଛା କାର୍ଯ୍ୟରେ ପରିଣତ କରି ପାରୁ ନ ଥିଲେ । ସ୍ଥୂଳତଃ ବିବାହ ପ୍ରସଙ୍ଗରେ ସ୍ତ୍ରୀସ୍ୱାଧୀନତା ପ୍ରବଳ ଥିଲା ।

କନ୍ୟା ପତି ନିର୍ବାଚନ କରିବା ପରେ ନିଜ ଅଭିପ୍ରାୟ ପିତାମାତାଙ୍କୁ ଜଣାଏ । ସେମାନେ ତାହାର ପ୍ରସ୍ତାବ ଆନନ୍ଦରେ, ବିନା ଆପତ୍ତିରେ ଗ୍ରହଣ କରନ୍ତି । ସେ ଦିନ ଠାରୁ ନିର୍ବାଚିତ ପତି, ବିବାହ ଆଗରୁ ମଧ୍ୟ, ଶ୍ୱଶୁର ଘରେ ଯାଇ ସ୍ୱଚ୍ଛନ୍ଦ ଭାବରେ ପତ୍ନୀସହିତ ଆଳାପାଦି କରି ପାରୁଥିଲା—ତାହାର ଗତି ଅବାଧ ଅବାରିତ, ତାହା ପାଇଁ ଦ୍ୱାର ସେପରି ସବୁବେଳେ ଉନ୍ମୁକ୍ତ । ବିବାହର ଅବ୍ୟବହିତ ପୂର୍ବେ କନ୍ୟାର ପିତା ବା ଅଭିଭାବକଙ୍କୁ ପଣ ବା ଶୁଳ୍କ ଦେବାକୁ ହେଉଥିଲା । ଏ ପଣର ପ୍ରଧାନ ପଦାର୍ଥ ଥିଲା ଅନ୍ତତଃ ଦୁଇଗୋଟି ଗାଈ, ଧନୀ ହୋଇଥିଲେ କେତୋଟି ରଜତ ମୁଦ୍ରା ଏବଂ କେତେଗୋଟି ବସ୍ତ୍ର—କନ୍ୟାର ମାତା ଓ ଭଉଣୀମାନଙ୍କ ପାଇଁ, ଆଉ କନ୍ୟାପାଇଁ । ବିବାହ ପରେ ମଧ୍ୟ କେହି କେହି ବିବାହ-ପଣ ଦେଉଥିଲେ । ନିତାନ୍ତ ଗରିବ ଲୋକେ ପଣଦାନରୁ ନିଷ୍କୃତି ପାଉଥିଲେ ।

ମାତଙ୍ଗୀ ପ୍ରତିଦିନ ଅନ୍ତତଃ ଦୁଇ'ଥର ରତ୍ନାକରଙ୍କ ସଙ୍ଗେ ମିଳାମିଶା ଆଳାପ କରେ, ସେବା କରେ । ଉମାଜୀ ଓ ତାହାର ପତ୍ନୀ ଏହା ଲକ୍ଷ୍ୟ

କରୁଥିଲେ । ରତ୍ନାକରଙ୍କ ସହିତ ଅନ୍ତରଙ୍ଗ ପ୍ରଣୟ ଜାତ ହେବାର ଦିନ ଦିନ ପରେ ମାତଙ୍ଗୀ ଲଜ୍ଜା ଓ ବିନୟ ସହ ପିତାମାତାଙ୍କୁ ନିଜ ମନର କଥା ସ୍ପଷ୍ଟରୂପେ ଜଣାଇଲା । ସେମାନେ ଅପୂର୍ବ ଆନନ୍ଦରେ କନ୍ୟାର ପତିନିର୍ବାଚନ, ବିବାହ-ପ୍ରସ୍ତାବ ସମର୍ଥନ କଲେ । ବିଦ୍ୱାନ୍, ରୂପବାନ୍, ଗୁଣବାନ୍, ଉଚ୍ଚକୁଳଜାତ ରତ୍ନାକରଙ୍କୁ ଜାମାତା ରୂପେ ପାଇବା ପରମ ସୌଭାଗ୍ୟର ବିଷୟ ବୋଲି ମନେ କଲେ । ତେବେ ସେମାନଙ୍କର ସନ୍ଦେହ ହେଲା—ଋଷିପୁତ୍ର ଭିଲକନ୍ୟାକୁ ବିବାହ କରିବାକୁ ଅସମ୍ମତ ହୋଇ ପାରନ୍ତି । କନ୍ୟାଠାରୁ ରତ୍ନାକରଙ୍କର ଅଭିପ୍ରାୟ ବୁଝି ନେଲେ—ଏ ବିବାହରେ ଋଷିକୁମାର ସଂପୂର୍ଣ୍ଣ ଅଙ୍ଗୀକୃତ ବୋଲି ଜଣାଇ ମାତଙ୍ଗୀ ସେମାନଙ୍କ ସନ୍ଦେହ ଘୁଞ୍ଚାଇଲା । ଉମାଜୀ କନ୍ୟା ମୁଖରୁ ଆହୁରି ଶୁଣିଲା ଯେ, ରତ୍ନାକର ପିତାମାତା, ବ୍ରାହ୍ମଣ ଧର୍ମ ବିସର୍ଜନ କରି ତାହାର ଜାମାତା ହେବାକୁ ପ୍ରସ୍ତୁତ । ଏ ସମାଦରେ ଉମାଜୀ ଓ ତାହାର ସ୍ତ୍ରୀ ଆନନ୍ଦରେ ଅଧୀର ହୋଇଗଲେ । ବିବାହର ଆୟୋଜନରେ ଦୁହେଁ ତତ୍ପର ହେଲେ ।



୭

ଉମାଜୀର ପଲ୍ଲୀଟି ତମସା ତୀରରୁ ପ୍ରାୟ ପଞ୍ଚାଶ ହାତ ଦୂରରେ, ଘନ ଜଙ୍ଗଲ ମଧ୍ୟରେ ଅବସ୍ଥିତ । ଚତୁର୍ଦ୍ଦିଗରେ ଉଚ୍ଚ ପ୍ରକାଣ୍ଡ ବୃକ୍ଷ, ଲତା, କଣ୍ଟକମୟ ଗୁଳ୍ମ ଇତ୍ୟାଦି ଦ୍ୱାରା ବେଷ୍ଟିତ ହୋଇଥିବାରୁ ପଲ୍ଲୀଟି ଦୂରରୁ ଦେଖା ଯାଉ ନ ଥିଲା । ପଥିକମାନେ ନଦୀ ତଟରୁ ମଧ୍ୟ ତାହାର ଅସ୍ତିତ୍ୱ ସ୍ଥିର କରି ପାରୁ ନ ଥିଲେ । ତାହା ଘନଶ୍ୟାମ ଶାଳ, ତମାଳ ଅନ୍ୟାନ୍ୟ ବୃକ୍ଷ ଲତା ଭିତରେ ଯେପରି ଲୁଚି ରହିଥିଲା । ପଲ୍ଲୀଟି ଏକ ଶତ କୁଟୀରରେ ପୂର୍ଣ୍ଣ । କୁଟୀର ସବୁ ଲାଲ, କଳା, ଶୁକ୍ଳ ଇତ୍ୟାଦି ରଙ୍ଗରେ ରଞ୍ଜିତ— ପରିଷ୍କାର ପରିଚ୍ଛନ୍ନ । କେନ୍ଦ୍ର ଭାଗରେ କୁମାର କୁମାରୀଙ୍କ ମିଳନ-ମନ୍ଦିର । ଗ୍ରାମର ଦୁଇ ପ୍ରାନ୍ତରେ ଦୁଇ ଗୋଟି କୂପ— ପଶ୍ଚିମ ଭାଗରେ ଗୋଟିଏ ସୁଦୀର୍ଘ ଗମ୍ଭୀର ନିର୍ମଳଜଳପୂର୍ଣ୍ଣ ପଦ୍ମଶୋଭିତ ସରୋବର । ସରୋବରକୁ ଲାଗି ଅରଣ୍ୟ-ପଥ । ସେ ପଥରେ ଲୋକେ ଅନ୍ୟାନ୍ୟ ଗ୍ରାମକୁ ଯିବା ଆସିବା କରୁଥାନ୍ତି । ତାହା ଥିଲା ସମସ୍ତ ବନ-ପଥର କେନ୍ଦ୍ର— ସେଠାରୁ ଶାଖାପଥ ଅନେକ ବାହାରି ଥିଲା । ସେହି ପଥ ଛଡ଼ା ପଥିକର ଅନ୍ୟ ରାସ୍ତାରେ ବନଯାତ୍ରା କରିବାର ଉପାୟ ନ ଥିଲା । କେତୋଟି ଅତ୍ୟୁଚ୍ଚ, ଅତି ପ୍ରକାଣ୍ଡ ପତ୍ରବହୁଳ ବୃକ୍ଷଶାଖାରେ ଛୋଟ ଛୋଟ ପଲା ବା କୁଟୀର ନିର୍ମିତ । ଉପରୁ ଭୂମି ପର୍ଯ୍ୟନ୍ତ ଦୃଢ଼ ରଜ୍ଜୁ-ସୋପାନ ବିଲମ୍ବିତ । ଦୁଇ ରଜ୍ଜୁ ମଧ୍ୟରେ ଅନେକ କାଷ୍ଠ ଫଳକ ଗୋଟିକ ଉପରେ ଗୋଟିଏ ଅବଦ୍ଧ । ରାତିରେ ଆରୋହିମାନେ ବୃକ୍ଷ ଉପରକୁ ଉଠିବାପରେ ରଜ୍ଜୁଟି ଉପରକୁ ଉଠାଇ ନେଉଥିଲେ । ଦିବସରେ ଅଧିକାଂଶ ସମୟ ତାହା ଲମ୍ବି ରହୁଥିଲା । ପଲ୍ଲୀବାସିମାନେ ବୃକ୍ଷଶାଖାରେ ଏ ପଲା ବା କୁଟୀରରେ ବସି ଦୂରରୁ ପଥିକମାନଙ୍କୁ ଦେଖୁଥିଲେ, ଶତ୍ରୁ-ଆଗମନ ଦେଖି ଆତ୍ମରକ୍ଷା ଚେଷ୍ଟା କରୁଥିଲେ ।

ଏହି ପଲ୍ଲି ଓ ନିକଟସ୍ଥ ଶହ ଗୋଟି ପଲ୍ଲିର ଭିଲମାନଙ୍କ ସର୍ଦ୍ଦାର ଉମାଜୀ । ଏ ସମସ୍ତ ଗ୍ରାମବାସିମାନେ ତାହାର ଅନୁଚର— ତାହାଙ୍କୁ ଭୟ ଭକ୍ତି କରନ୍ତି । ସର୍ଦ୍ଦାରର ଆଜ୍ଞା ସେମାନଙ୍କର ଶିରୋଧାର୍ଯ୍ୟ । ତାହାର ନିର୍ଦ୍ଦେଶ, ଇଙ୍ଗିତ କ୍ରମେ ସେମାନେ କାର୍ଯ୍ୟ କରୁଥିଲେ । ସେମାନଙ୍କ ବୃତ୍ତି କୃଷି, ଚୌର୍ଯ୍ୟ ଓ ମୃଗୟା । ଚୋର ଡକାଏତିରେ ବହୁ ଅଧିକ ଧନ ସଞ୍ଚୟ କରୁଥିଲେ । ଗଭୀର ଶାଳବନ ମଧ୍ୟରେ ସେମାନେ ବ୍ୟାଘ୍ର, ଭଲ୍ଲୁକ, ହସ୍ତୀ ଇତ୍ୟାଦି ପଶୁର ଦମ୍ଭ ଉପେକ୍ଷା କରି ଯେପରି ସେମାନଙ୍କ ସଙ୍ଗେ ବାସ କରିଥିଲେ । ସେମାନେ ଚୋରି ଲୁଟି କରି ଆଣି ଉମାଜୀକୁ ସବୁ ଦିଅନ୍ତି । ତାହାର ବିନାନୁମତିରେ କେହି ଯଦି ଲୁଣ୍ଠିତ ଦ୍ରବ୍ୟ ବା ଅର୍ଥରୁ କିଛି ଆତ୍ମସାତ୍ କରେ ତାହାହେଲେ ଉମାଜୀ ହାତରେ ତାହାର ମରଣ ସୁନିଶ୍ଚିତ । ଅର୍ଥ ସଂଗୃହୀତ ହେବା ପରେ ଉମାଜୀ ଅନୁଚରମାନଙ୍କୁ କିଛି କିଛି ଦେଇ ନିଜେ ସବୁ ରଖେ । ଧନୁଶର, ଛୁରୀ, ଖଣ୍ଡା, ଟାଙ୍ଗି, ଠେଙ୍ଗା, ମୁଦ୍ଗର ଭିଲମାନଙ୍କର ପ୍ରଧାନ ଅସ୍ତ୍ରଶସ୍ତ୍ର । ସେମାନେ ଅବ୍ୟର୍ଥ-ଲକ୍ଷ୍ୟ ତୀରନ୍ଦାଜ । ଲୌହରେ ଶହ ପାଞ୍ଚ ପ୍ରକାର ତୀର ତିଆରି କରୁଥିଲେ ।

ଭିଲମାନଙ୍କ ଶରୀର ଗାଢ଼ କୃଷ୍ଣବର୍ଣ୍ଣ, ଦେହର ଉଚ୍ଚତା ମଧ୍ୟମ ଧରଣର । ଭିଲ ପୁରୁଷମାନେ ସାଧାରଣରେ ସଦାନନ୍ଦମୟ । ମନେ ହେଉଥିଲା, ଯେପରି ଦୁଃଖ ଶୋକ, ବାଧା ବିପଦ ସେମାନଙ୍କର କିଛି କରିପାରୁ ନାହିଁ । ସମସ୍ତ ଦିବସ ହାଡ଼ଭଙ୍ଗା ପରିଶ୍ରମ ପରେ ସେମାନେ ସନ୍ଧ୍ୟାରେ ବଂଶୀ ବଜାଇ ବଜାଇ ଗୀତ ଗାଇ ଗାଇ ଗୃହକୁ ଫେରନ୍ତି । ସେମାନଙ୍କ ପରିଧାନରେ କେବଳ ଗୋଟିଏ ବସ୍ତ୍ର, ଅନେକେ କୌପୀନ ପିନ୍ଧୁଥିଲେ । ସମସ୍ତଙ୍କ ଗଳାରେ ପୋହଳାମାଳା । କେହି କେହି ହାତରେ ଧରୁ ବଳା ପିନ୍ଧୁଥିଲେ । ସମସ୍ତଙ୍କ ମସ୍ତକରେ ଦୀର୍ଘ କେଶ ।

ସେମାନଙ୍କ ଗୃହପାଳିତ ପଶୁ ମଧ୍ୟରେ ମହିଷ, ଗୋରୁ, କୁକୁଡ଼ା, ଛେଳି ଓ ମେଷ । ମହିଷ ବଳଦ ସାହାଯ୍ୟରେ ସେମାନେ କୃଷି କରୁଥିଲେ ।

ଉମାଜୀ ଓ ତାହାର ଅନୁଚରଗଣ ନୃଶଂସ, ତସ୍କର, ଡ଼କାଏତ ବୋଲି ଯେ ସମସ୍ତ ଭିଲ ଜାତି ସେପରି ଥିଲେ, ଏହା ଯେପରି ପାଠକମାନେ ସ୍ଥିର କରି ନ ନିଅନ୍ତି । ପ୍ରତ୍ୟେକ ଜାତିରେ ସଜ୍ଜନ ଦୁର୍ଜନ, ଭଲ ମନ୍ଦ ଲୋକ ଦେଖା ଯାଇ ଥାନ୍ତି । ସାଧାରଣରେ ଭିଲମାନେ, ଅସଭ୍ୟ ଅଶିକ୍ଷିତ ହେଲେହେଁ, ଥିଲେ ସତ୍ୟବାଦୀ, ଅକପଟ, ସରଳ, କଷ୍ଟସହିଷ୍ଣୁ, ଉଦାର, ଶାନ୍ତିପ୍ରିୟ । କଳହ ବିବାଦ ମଧ୍ୟରେ ରହିବାକୁ ସେମାନେ ଭଲ ପାଉ ନ ଥିଲେ । ସେମାନେ ଶାସନ ମାନି ଚଳନ୍ତି । ସାରା ଦିନର କଠିନ ଶ୍ରମରେ ଯାହା ପା'ନ୍ତି ସେଥିରେହିଁ ହସାଖୁସିରେ ଜୀବନ ନିର୍ବାହ କରନ୍ତି— ପରପଦାର୍ଥ ଅପହରଣ କରି ଅନୁସନ୍ଧାନ କରନ୍ତି ନାହିଁ । ସେମାନଙ୍କର ଅଭାବ ଅଭିଯୋଗ କମ୍ ଥିଲା, କିଛି ନ ଥିଲା କହିଲେ ଚଳେ । ଭବିଷ୍ୟତ୍ ଭାବନା ସେମାନଙ୍କ କଳ୍ପନାର ସୀମା ମାଡ଼ି ନ ଥିଲା ।

ପଲ୍ଲିଟିରେ ସମସ୍ତ ଗୃହ ଅପେକ୍ଷା ଉମାଜୀର ଗୃହ ବୃହତ୍ତର । ତାହାର ଗୃହରେ ଅନେକ କକ୍ଷ । ଗୃହ ତଳେ, ଭୂଗର୍ଭରେ ପ୍ରଶସ୍ତ ଗୃହ । ନିମ୍ନ ଗୃହରେ ଲୁଣ୍ଠିତ ଧନ ଦ୍ରବ୍ୟ ଗଚ୍ଛିତ ରହୁଥିଲା, ବିପଦ ବେଳେ ଉମାଜୀ ସେଠାରେ ପ୍ରହରୀଙ୍କର ଲୁଚି ଆତ୍ମରକ୍ଷା କରୁଥିଲା । ଭୂଗର୍ଭ ଗୃହରୁ ପର୍ବତର ତୀର ପର୍ଯ୍ୟନ୍ତ ଗୋଟିଏ ସୁଡ଼ଙ୍ଗ ଖୋଳା ଯାଇଥିଲା । ଗୃହ ଶତ୍ରୁ ଦ୍ୱାରା ଅବରୁଦ୍ଧ ହେଲେ, ବିପଦରୁ ଉଦ୍ଧାର ପାଇବାର ଉପାୟ ନ ଦିଶିଲେ, ଗୁପ୍ତ ଭାବରେ ପଳାୟନ କରିବା ପାଇଁ ସେହି ସୁଡ଼ଙ୍ଗ ମାର୍ଗ ଉଦ୍ଦିଷ୍ଟ ।

ପଶ୍ଚିର ପଶ୍ଚା ଦିଗରେ ଗୋଟିଏ ବିଶାଳ ଗୃହ— ସେଥିରେ ଛଅଟି ବଡ଼ ବଡ଼ ପ୍ରକୋଷ୍ଠ । ମଧ୍ୟ ପ୍ରକୋଷ୍ଠଟି ଉମାଜୀର ମନ୍ତ୍ରଣା-ମନ୍ଦିର— ସେଠାରେ ବସି ସେ ଅନୁଚର, ଗୁପ୍ତଚରମାନଙ୍କ ସଙ୍ଗେ ଗୁପ୍ତ ପରାମର୍ଶ କରୁଥିଲା । ଅନ୍ୟ ଦୁଇ କକ୍ଷରେ ମଦ୍ୟ, ମାଂସ ଇତ୍ୟାଦି ଖାଦ୍ୟ ପାନୀୟ ପ୍ରସ୍ତୁତ ହେଉଥିଲା ।



୮

ଏନେ ମାତଙ୍ଗୀ ନୌକାରେ ବସି ନଦୀତଟରେ, ରତ୍ନାକରଙ୍କ ବିହାର-ସ୍ଥଳରେ ପହଞ୍ଚିଲା । ରତ୍ନାକର ସେଠାରେ ତାହାକୁ ଅପେକ୍ଷା କରିଥିଲେ । ପୂର୍ବ ଦିନ ସ୍ଥିର ହୋଇଥିଲା, ଆଜ ସନ୍ଧ୍ୟା ବେଳେ ସେ ପର ଦିନ ସକାଳେ ତପୋବନ ଆଶ୍ରମ ତ୍ୟାଗ କରିବେ । ବାଳିକାକୁ ଦେଖିବାକ୍ଷଣି ରତ୍ନାକର ତାହାକୁ ଗାଢ଼ ଆଲିଙ୍ଗନ କଲେ । ଅଧିକ ସମୟ ସେଠାରେ କଥୋପକଥନ ନ କରି ଦୁହେଁ ନୌକା ଚଢ଼ିଲେ । ନୌକା ଧୀରେ ଧୀରେ ପଶ୍ଚି ଆଡ଼କୁ ଅଗ୍ରସର ହେଲା ।

ସେତେବେଳକୁ ସନ୍ଧ୍ୟା ଅତୀତ ହୋଇ ଯାଇଛି । ବିଶ୍ୱବଶୀ ସନ୍ଧ୍ୟାର ଅଞ୍ଚଳ ଧରି ପୃଥିବୀ ବକ୍ଷରେ ବିଚରଣ କରୁଅଛି । ପଲ୍ଲିର ପ୍ରତି ଗୃହରେ, ଋଷିଆଶ୍ରମମାନଙ୍କରେ ଦୀପ ଜଳୁଅଛି । ବନରେ ଦୀପ ଜଳାଇବ କିଏ —ଭଗବାନ ସେଠାରେ ଖଦ୍ୟୋତ ଜଳାଇଅଛନ୍ତି । ଆକାଶ ଅନ୍ଧକାରାଚ୍ଛନ୍ନ —ଏଣୁ ସେଠାରେ ପରମେଶ୍ୱର ନକ୍ଷତ୍ର ଜଳାଇଛନ୍ତି । ଅରଣ୍ୟ, ପଲ୍ଲୀ, ନଦୀତୀରରେ ଅନ୍ଧକାର । ନୌକା ଅନ୍ଧକାରାବୃତ; କିନ୍ତୁ ବାଳିକାର ସମୁଜ୍ଜ୍ୱଳ ମୁଖଶ୍ରୀ ଢାଙ୍କିବା ଅନ୍ଧକାର ବିଧାତାର ଭଣ୍ଡାରରେ ନ ଥିବାରୁ ରତ୍ନାକର ତାହାକୁ ଦେଖି ପାରୁ ଥିଲେ ।

ପ୍ରଣୟିଯୁଗଳ ଆନନ୍ଦରେ ପ୍ରେମାଳାପ କରି କରି ନୌକା ଚଳାଇଲେ । ମାତଙ୍ଗୀ ନିଜ ଯୌବନ-ରଥର ସାରଥି, ଜୀବନ-ତରଣୀର କାଣ୍ଡାରୀ ପାଇ ଭାବୀ ଜୀବନ-ଯାତ୍ରା ସମ୍ବନ୍ଧରେ କେତେ ସୁଖ-କଳ୍ପନାରେ,କେତେ ଆନନ୍ଦ-ଆଶାରେ ଉତ୍‌ଫୁଲ୍ଲ । ରତ୍ନାକର ସଂସାର-ରଙ୍ଗାଳୟର ଅଭିନ୍ନ-ହୃଦୟା ଅଭିନେତ୍ରୀ, ଜୀବନ-ଯୁଦ୍ଧର ସହାୟ ଓ ସଙ୍ଗିନୀ, ଯୁବତୀକୁଳ-ରତ୍ନ ଲାଭ କରି ପୁଲକିତ ।

ରତ୍ନାକର ଓ ମାତଙ୍ଗୀ ପଲ୍ଲିରେ ଉପନୀତ ହେଲେ । ହାତ ଧରା ଧରି ହୋଇ ଉମାଜୀର ଗୃହରେ ପ୍ରବେଶ କଲେ । ସର୍ଦାର ଓ ତାହାର ସ୍ତ୍ରୀ ଅତ୍ୟନ୍ତ ଆଦରରେ ରତ୍ନାକରଙ୍କର ଅଭ୍ୟର୍ଥନା କଲେ । ସମସ୍ତେ ଆସୀନ ହେବା ପରେ, ଉମାଜୀ ହାସ୍ୟପୂର୍ଣ୍ଣ ମୁଖରେ ତାଙ୍କୁ କହିଲା,—'ଆମ ମାଉ ତୁମ ସଙ୍ଗେ ବିବାହ କରିବା ଠିକ୍ କରି ସାରିଛି— ଶୁଣି ସୁଖୀ ହେଲି । ସେ କହୁଛି, ତୁମେ ମଧ୍ୟ ଏ ବିବାହରେ ରାଜି—!"

ରତ୍ନାକର—ମାତଙ୍ଗୀ ସତ କହୁଛନ୍ତି, ମୁଁ ରାଜି ଅଛି । ବାପା ମା'ଙ୍କ ଅଜାଣାରେ ସବୁ ଠିକ୍ କରିଛି ।

ଉମାଜୀ— ଭାଗ୍ୟର ବିଷୟ. ତୁମେ ମୋର ଜାମାତା ହେବ ।

ରତ୍ନାକର— ପୂର୍ବ ପୁଣ୍ୟ ବଳରେ ତୁମେ ରୂପବତୀ ଗୁଣବତୀ ମାତଙ୍ଗୀଙ୍କୁ କନ୍ୟା ରୂପେ ପାଇଛ । ପୂର୍ବ ପୁଣ୍ୟ ଫଳରେ ମୁଁ ତାଙ୍କର ପତି ହେବାକୁ ଆସିଛି ।

କେତେକ ସମୟ କଥାବାର୍ତ୍ତା ହେବା ପରେ ମାତଙ୍ଗୀ ରତ୍ନାକରଙ୍କ ସଙ୍ଗେ ନେଇ ଅନ୍ୟ ଏକ କକ୍ଷକୁ ଗଲା । ସେଠାରେ ଆଗରୁ ଖାଦ୍ୟ ପଦାର୍ଥ ରଖା ଯାଇ ଥିଲା । ଖାଦ୍ୟ ଦ୍ରବ୍ୟ ମଧ୍ୟରେ ପ୍ରଧାନ ଥିଲା ମଦ୍ୟ ଓ ମାଂସ । ଦୁହେଁ ଉପବିଷ୍ଟ ହେଲେ । ମାତଙ୍ଗୀ ଅଧରରେ ମନ୍ଦହାସ ଖେଳାଇ ମଦ୍ୟ ମାଂସ ଖାଇବା ସକାଶେ ରତ୍ନାକରଙ୍କୁ ଅନୁରୋଧ କଲା । ଯୁବକ କିଛି ନ କହି ଚିନ୍ତା କରିବାକୁ ଲାଗିଲେ । ଆଜି ଯାଏ ସେ ମଦ୍ୟ ମାଂସ ଖାଇବା ତେଣିକି ଥାଉ, ଦର୍ଶନ ବି କରି ନାହାନ୍ତି । ଏ ସବୁ ଖାଇଲେ ଯେ ଧର୍ମରେ ବ୍ୟାଘାତ ଲାଗିବ ଏଥି ପାଇଁ ତାଙ୍କର ଭୟ, ସନ୍ଦେହ ବା ସଙ୍କୋଚ ନ ଥିଲା । କେବେ ଖାଇ ନାହାନ୍ତି, ଆଜି ଖାଇବାକୁ ଆରମ୍ଭ କରିବେ କିପରି ତାହାହିଁ ଚିନ୍ତାର ବିଷୟ ହୋଇ ପଡ଼ିଲା । ମାତଙ୍ଗୀ

ଦରହାସ ସହିତ ପଚାରିଲା,—'ଭାବୁଚ କଣ ସୁନ୍ଦର ? ଏ ସବୁ ଖାଇଲେ ବ୍ରାହ୍ମଣତ୍ୱ ଯିବ ଭୟ କରୁଚ ?"

ରତ୍ନାକର ଅଳ୍ପ ହସି କହିଲେ—'ବ୍ରାହ୍ମଣତ୍ୱ ତ ଯାଇଛି—ଯିବ ଆଉ କଣ ? ସେଥିରେ ଜଳାଞ୍ଜଳି ଦେଇ ସାରିଛି । ତୁମ ପ୍ରେମ ଆଗରେ ବ୍ରାହ୍ମଣତ୍ୱ, ଦେବତ୍ୱ କି ଛାର ! ଖାଲି ଖାଦ୍ୟରେ ବ୍ରାହ୍ମଣତ୍ୱ କେବେ ଯାଏ ନାହିଁ କି ଆସେ ନାହିଁ—କେବଳ ଖାଦ୍ୟରେ ଜାତି ଭ୍ରଷ୍ଟ ହୁଏ ନାହିଁ । ତେବେ ରୁଚି ନେଇ ଚିନ୍ତା କରୁଥିଲି ।'

ମାତଙ୍ଗୀର ମନ୍ଦହାସ ଈଷତ୍ ମ୍ଳାନ ହୋଇଗଲା । ସେହି ସ୍ମିତ-ମାଳିନ୍ୟରେ ବି ତାହାର ଲାବଣ୍ୟମୟ ମୁଖମଣ୍ଡଳ ଆଭାମୟ । ମୁଖର ସେଇ ମାଧୁରୀ ଚୋରାଇ ଆଣିବା ପାଇଁ ରତ୍ନାକରଙ୍କର ହସ୍ତ ସ୍ୱତଃ ଧୀରେ ଧୀରେ ଉଠି ମାତଙ୍ଗୀର ଚିବୁକ ସ୍ପର୍ଶ କଲା । ସ୍ପର୍ଶ ସଙ୍ଗେ ସଙ୍ଗେ ବାଳିକାର ମୁଖ ମଳିନ ହୋଇଗଲା । ଦେଖୁଁ ଦେଖୁଁ ତାହାର ନୟନଯୁଗଳ ଜଳପୂର୍ଣ୍ଣ ହୋଇ ଉଠିଲା । ଏକ ବିନ୍ଦୁ ଉଷ୍ଣ ଲୋତକ ରତ୍ନାକରଙ୍କ କରତଳରେ ପଡ଼ିଲା । ତାଙ୍କ ହାତ ସତେ ଯେପରି ଚୋରି କରିବାକୁ ଯାଇଥିଲା—ଉଷ୍ଣ ଅଶ୍ରୁ ପ୍ରହାରରେ ଭୀତ ହୋଇ ଚୋର ପରି ପୁଣି ତଳକୁ ଖସିଲା ।

ରତ୍ନାକର ବିସ୍ମିତ, ସ୍ତବ୍ଧ ! କହିଲେ—'ଦୁଃଖ କର ନାହିଁ ସୁନ୍ଦରି ! ତୁମ ପ୍ରଦତ୍ତ ଖାଦ୍ୟ ମୋର ଅରୁଚିକର ହେବ ମନେ କରୁଚ ? କଦାପି ନୁହେଁ । ତୁମର ସର୍ବାଙ୍ଗ, ତୁମର ସମସ୍ତ କାର୍ଯ୍ୟ ମୋ ଚକ୍ଷୁ-ରୁଚିକର, ତୁମର ପ୍ରତ୍ୟେକ କଥା ମୋ କର୍ଣ୍ଣ-ରୁଚିକର—ତୁମ ଦତ୍ତ ଯେ କୌଣସି ଖାଦ୍ୟ ମୋର ଜିହ୍ୱା-ରୁଚିକର । ଏ ସବୁ କେବେ ଖାଇ ନାହିଁ—ବର୍ତ୍ତମାନ ଖାଇବି ତୁମ ଲାଗି । ଭାବ ଏହାହିଁ ସ୍ଥିର କରିଛି । ତୁମକୁ

ବବାଦ୍ଧ କରବ—ବବାଦ୍ଧ କର ଭ୍ରିଲ ହେବ । ଭ୍ରିଲ ହୋଇ ଭ୍ରିଲ-ଆଚରଣ କରବ, ଭ୍ରିଲ-ଖାଦ୍ୟ ଖାଇବ । ଦୁଃଖ, ସନ୍ଦେହ କର ନାହିଁ ।'

ରତ୍ନାକର ମାତଙ୍ଗୀର ଅଶ୍ରୁମୋଚନ କର ତାହାକୁ ଅଙ୍କରେ ବସାଇଲେ । ସୁରାପାନ ଆରମ୍ଭ କଲେ । ମାତଙ୍ଗୀର ମୁଖ ମଣ୍ଡଳ ପୂର୍ବ ପର ପ୍ରସନ୍ନ, ହାସ୍ୟମୟ ହୋଇ ଉଠିଲା । ସେ ମାଂସ ଖଣ୍ଡିଏ ଧର ରତ୍ନାକରଙ୍କ ତୁଣ୍ଡରେ ତରଇ କର ହସି ହସି କହିଲା,—'ମଦ୍ୟମାଂସ ଖାଇବାକୁ କାହର ପଇତା ତୁମକୁ ମନା କରୁନାହିଁ ତ ?'

ରତ୍ନାକର—କଦାପି ନୁହେ, ପଇତା ସବୁ ଦେଖିପାରେ, କିଛି କର ପାରେ ନା । ଯଜ୍ଞୋପବୀତ ମୋତେ ତୁମକୁ ପ୍ରେମ କରବାର ଦେଖୁଛି, ଆଳାପ ଆଲିଙ୍ଗନ କରବାର ଦେଖୁଛି—କିନ୍ତୁ କରୁଛି କଣ, କହୁଛି ବା କଣ ? ବର୍ତ୍ତମାନ ସେ ମୋର ମଦ୍ୟମାଂସ-ଭକ୍ଷଣ ଦେଖୁଛି ମାତ୍ର, ମନା କରୁ ନାହିଁ—କର ପାରବ ନାହିଁ ।

ପୁନର୍ବାର ସୁରାପାନ କଲେ । ଦକ୍ଷିଣ ହସ୍ତରେ ଖଣ୍ଡିଏ ମାଂସ, ବାମ ହସ୍ତରେ ଯଜ୍ଞୋପବୀତଟି ଧର ଗମ୍ଭୀର କଣ୍ଠରେ କହିଲେ, —'ମୁଁ ବ୍ରାହ୍ମଣତ୍ୱ ଛାଡ଼ୁଛି, ପିତାମାତାଙ୍କୁ ଛାଡ଼ୁଛି—ଏବେ ଏଇ ଯଜ୍ଞୋପବୀତକୁ ମଧ୍ୟ ଛାଡ଼ୁଛି । ବର୍ତ୍ତମାନ ମୁଁ ମାତଙ୍ଗୀ-ପତି, ଋଷିକୁମାର ନୁହେଁ—ବର୍ତ୍ତମାନ ମୁଁ ଭ୍ରିଲ, ବ୍ରାହ୍ମଣ ନୁହେଁ । ଭ୍ରିଲ ଯଜ୍ଞୋପବୀତ ଧର କରବ କଣ ? ଯଜ୍ଞୋପବୀତ ! ବାପା ତୋତେ ମୋ କାନ୍ଧରେ ଦେଇଥିଲେ । ଏ ପର୍ଯ୍ୟନ୍ତ ତୋର ମର୍ଯ୍ୟାଦା ରକ୍ଷା କର ଆସିଛି—ଆଉ କରବ ନାହିଁ । ତୋତେ ଆଜଠାରୁ ବଦାୟ ଦେଉଛି ।'

ସେ ଯଜ୍ଞୋପବୀତଟି ଦେହରୁ ବାହାର କରି ଦେଲେ, ଛିନ୍ନ ମର୍ଦ୍ଦିତ ପଦଦଳିତ କରି ଦୂରରେ ନିକ୍ଷେପ କଲେ । ମାତଙ୍ଗୀ ହସି ହସି କହିଲା—'ଉଃ ଏତେ ରାଗ, ସାମାନ୍ୟ ସୂତା ଖଣ୍ଡିକ ଉପରେ ଏତେ ରାଗ ! ଆଉ ପଇତା-ଭୟ ନାହିଁ—ନିଶ୍ଚିନ୍ତ ହୋଇ ଖାଅ ।' ରତ୍ନାକର ମାତଙ୍ଗୀର ହାସ୍ୟରେ ହାସ୍ୟ ମିଳିତ କରି କହିଲେ—'ରାଗ ହେବାର କଥା । ଉପବୀତ ଯେ ମୀଚତାର ନିଦର୍ଶନ, ଗର୍ବର ଚିହ୍ନ ।'

ଦୁହେଁ ପରମ ଆନନ୍ଦ କୌତୁକରେ ରାତ୍ରି କଟାଇଲେ ।



୯

ସନ୍ଧ୍ୟା ହେବା ପରେ ରତ୍ନାକର ପ୍ରତ୍ୟହ ଆଶ୍ରମକୁ ଫେରି ଚ୍ୟବନଙ୍କ ହୋମ ଯଜ୍ଞରେ ସାହାଯ୍ୟ କରୁଥିଲେ । ସେ ଦିନ ସନ୍ଧ୍ୟାରେ ପୁତ୍ର ଆସିଲେ ନାହିଁ । ମୁନି, ମୁନିପତ୍ନୀ ଅପେକ୍ଷା କରି ରହିଲେ । ଦେଖୁଁ ଦେଖୁଁ ରାତି ହେଲା; ତଥାପି ରତ୍ନାକରଙ୍କର ଦେଖା ନାହିଁ । ଚ୍ୟବନ ଅତ୍ୟନ୍ତ କୋପ ଓ ଦୁଃଖରେ ତମସାତୀରରେ ବହୁଦୂର ବୁଲି ବୁଲି ପୁତ୍ରଙ୍କ ଅନୁସନ୍ଧାନ କଲେ—ପାଇଲେ ନାହିଁ । ତାଙ୍କ ରାଗ, ଦୁଃଖ ଉଗ୍ର ମୂର୍ତ୍ତି ଧାରଣ କଲା, ଶରୀର କଂପିତ ହେଲା । ସ୍ଥିର କଲେ, ରତ୍ନାକର ଭିଲ୍ଲ କୁମାରୀ ସହିତ ଚାଲି ଯାଇଛନ୍ତି । ହତାଶ ହୋଇ ଆଶ୍ରମକୁ ବାହୁଡ଼ି ପତ୍ନୀଙ୍କି କ୍ରୋଧୋଦ୍ଦୀପ୍ତ ସ୍ୱରରେ କହିଲେ—ରତ୍ନାକର ଚିର କାଳ ପାଇଁ ଧର୍ମମାର୍ଗରୁ ସ୍ଖଳିତ, ଦେବତ୍ୱରୁ ବଞ୍ଚିତ, ଚରିତ୍ର-ଚ୍ୟୁତ, ଜାତିଭ୍ରଷ୍ଟ ହୋଇ ପଡ଼ିଛନ୍ତି, ମ୍ଳେଚ୍ଛା ମାତଙ୍ଗୀ ପ୍ରେମରେ ରସାତଳଗାମୀ ହୋଇଛନ୍ତି । କ୍ରୋଧାବେଗରେ ତାଙ୍କର ଆଉ ବାକ୍‌ସ୍ଫୂର୍ତ୍ତି ହୋଇ ପାରିଲା ନାହିଁ । ସୁକନ୍ୟା ସ୍ତମ୍ଭିତ ହୋଇ ଲୋତକପୂର୍ଣ୍ଣ ନେତ୍ରରେ ଠିଆ ହୋଇ ରହିଲେ । ସେମାନଙ୍କର ସନ୍ଦେହ, ଆଶଙ୍କା ଶେଷରେ ସତ୍ୟରେ ପରିଣତ ହୋଇ ଥିବାର ଦେଖି ଦୁହିଁଙ୍କ ମସ୍ତକ ଲଜ୍ଜା, ଅପମାନରେ ନତ ହୋଇଗଲା ।

ଚ୍ୟବନ ଅଗ୍ନି ନେତ୍ରରେ କୋପ-କମ୍ପିତ କଣ୍ଠରେ କହିଲେ,— 'କାନ୍ଦୁଛ ସୁକନ୍ୟା ? ଏ କାନ୍ଦିବାର ସମୟ ନୁହେ । ହୃଦୟରେ ଶତ ବଜ୍ରର ଶକ୍ତି ପୁଞ୍ଜୀଭୂତ କରି, ପ୍ରାଣରେ ସହସ୍ର ସିନ୍ଧୁର ଗର୍ଜନ ଏକତ୍ରିତ କରି କାମୋନ୍ମତ୍ତ ଭିଲାଙ୍ଗାର ପୁତ୍ରକୁ ଅଭିଶାପ ଦେବାର ସମୟ ଏ । ନାରୀର କରୁଣା, କୋମଳତା, କ୍ଷମା ଦେଖାଇବାର ସମୟ ଏ ନୁହେ ।'

ସୁକନ୍ୟା—ଆର୍ଯ୍ୟ ! ମୁଁ କେବଳ ନାରୀ ନୁହେଁ—ମାତା ମଧ୍ୟ । ନାରୀର ପ୍ରାଣ, ମାତାର ହୃଦୟ ଆପଣ ବୁଝି ନାହାନ୍ତି । ପୁତ୍ର ଜନନୀର

ସକଳ ଆନନ୍ଦ ଆଶାର କେନ୍ଦ୍ର । ପୁତ୍ରର ସାମାନ୍ୟ ଦୁ-ର୍ବ୍ୟବହାରରେ ବି ଜନନୀର ହୃଦୟ ବ୍ୟଥିତ ହୁଏ । ରତ୍ନାକରର ଜଘନ୍ୟ ଆଚରଣରେ ମୋ ପ୍ରାଣ କାନ୍ଦି ଉଠୁଛି ସତ୍ୟ, କିନ୍ତୁ ତାହାର ଅମଙ୍ଗଳ ସହ୍ୟ କରି ନ ପାରେ । ଆପଣଙ୍କ ଅଭି-ଶାପରେ ତାହାର ସର୍ବନାଶ ହେବ । ତାହାକୁ କ୍ଷମା କରନ୍ତୁ । ସେ ଆମଠାରୁ ବିଚ୍ଛିନ୍ନ ହୋଇଅଛି—ଏ ତ କୌଣସି ଶାପର ଫଳ । ପୁଣି ଅଭିଶାପ ଦେଇ ଲାଭ କଣ ? ସେ ଆମର ପୁତ୍ର ଥିଲା, କୋଳରେ ଥିଲା—ବର୍ତ୍ତମାନ ସେ ଦସ୍ୟୁ, ଦୂରରେ ରହୁଛି । ତଥାପି ସେ କଣ ମୋର ପୁତ୍ର ନୁହେ ? ଆପଣଙ୍କର ନୁହେ ? ତାହାକୁ ଅଭିଶାପ ଦେଲେ ମୋର ହୃଦୟ ବିଦୀର୍ଣ୍ଣ ହେବ ।

ଚ୍ୟବନ—ହେଉ ବିଦୀର୍ଣ୍ଣ, କ୍ଷତି ନାହିଁ । ନାରକୀ ପୁତ୍ରର ଜନନୀ ବୋଲି ପରିଚୟ ଦେବା ଅପେକ୍ଷା ପ୍ରାଣ ବିସର୍ଜ୍ଜନ କରିବା ଶତଗୁଣେ ଶ୍ରେୟସ୍କର ।

ସୁକନ୍ୟା—କ୍ରୋଧ ଶାନ୍ତ କରନ୍ତୁ । ମୋର ପ୍ରାର୍ଥନା ଯଦି ଅଗ୍ରାହ୍ୟ ହୁଏ, ତାହାହେଲେ ଅଭିଶାପରେ ଆଗେ ମୋର ଜୀବନ୍ ଶେଷ କରନ୍ତୁ । ହା ରତ୍ନାକର !

ସେ ଚ୍ୟବନଙ୍କ ଚରଣରେ ପଡ଼ି କ୍ରନ୍ଦନ କରିବାକୁ ଲାଗିଲେ । ଲୋତକରେ ପଦ-ପଦ୍ମ ସିକ୍ତ କରି ଦେଲେ । ଚ୍ୟବନ ସ୍ତବ୍ଧ, ନିର୍ବାକ୍ ! କିଛି ସମୟ ଯେପରି ଠିଆ ହୋଇଥିଲେ ସେପରିହିଁ ରହିଲେ । ସୁକନ୍ୟାଙ୍କ ଅଶ୍ରୁ ବର୍ଷଣରେ ଚ୍ୟବନଙ୍କ ଚରଣଯୁଗଳ ଶୀତଳ ହେଲା, ପାଦର ଶୀତଳତା କ୍ରମେ ତାଙ୍କ ମସ୍ତକକୁ ଉଠିଲା । ସେହି ଶୀତଳତାରେ ତାଙ୍କର ପ୍ରଚଣ୍ଡ କୋପାଗ୍ନି ଅସ୍ତେ ଅସ୍ତେ ନିର୍ବାପିତ ହେବାକୁ ଲାଗିଲା । ସେ ପତ୍ନୀଙ୍କି ତଳୁ ଉଠାଇଲେ । ଅନେକ ସମୟ ଦୁହେଁ ଅବାକ୍ ହୋଇ ବସିଲେ ।

ପରେ ଚ୍ୟବନ ଧୀର ଅଥଚ ଗମ୍ଭୀର ସ୍ୱରରେ କହିଲେ—'ଇଚ୍ଛା ଥିଲା, ଶାପ ଦେଇ ପାଷଣ୍ଡ ରତ୍ନାକରର ପ୍ରାଣସଂହାର କରିବି । କିନ୍ତୁ ବର୍ତ୍ତମାନ ସେ ଯେ ମରିଛି । ଶବର୍ ଫେରେ ମରଣ କଣ ? ଭଗବନ୍, ତୁମର ଲୀଳା ବାସ୍ତବିକ ବିଚିତ୍ର ! ଆଶା ଥିଲା, ରତ୍ନାକର ସାଧନା ବଳରେ ମହାତ୍ମା ହେବ, ଜଗଦ୍ ପ୍ରସିଦ୍ଧ ହୋଇ ଉଠିବ । ଆଶା ଏବେ ନିର୍ମୂଳ ! ମାନବର ସମସ୍ତ କାମନା ସକଳ ସମୟରେ ପୂର୍ଣ୍ଣ ହୁଏ ନାହିଁ । କାଳର ଅନ୍ତରାଳରେ ତାହାର ଯେଉଁ ଭବିତବ୍ୟତା ପ୍ରଚ୍ଛନ୍ନ ରହିଅଛି, ତାହା ସେହି ଅନନ୍ତକୀର୍ତ୍ତି କାଳର ବି ଅଜ୍ଞାତ । ଯାହାଙ୍କ ପ୍ରଭାବରେ କାଳ କ୍ରୀଡ଼ା କରୁଅଛି, ତାହାଙ୍କର ଯାହା ଇଚ୍ଛା ତାହାହିଁ ହେବ—ସେଥିରେ କ୍ଷୁଦ୍ର ମାନବର ହାତ ନାହିଁ ।

ପଢ଼ ପକ୍ଷୀ ଚର ବନ ସକାଶେ ପୁତ୍ର ସଙ୍ଗେ ସଙ୍ଗେ ସୁଖ ହରାଇ ବସିଲେ ।



୧୦

ରତ୍ନାକର ଓ ମାତଙ୍ଗୀଙ୍କ ବିବାହ ଦିବସ ସ୍ଥିର ହେଲା । ବିବାହ ଦିନ ଦୁହେଁ ବରକନ୍ୟା ବେଶରେ ସଜ୍ଜିତ ହେଲେ । ମାତଙ୍ଗୀ ବିବାହ ଶାଢ଼ୀ ପରିଧାନ କଲା—ତାହାର ନାମ 'ସିନ୍ଦୂରଶାଢ଼ୀ' । ଶାଢ଼ୀଟି ମୋଟା ଅତି ଛୋଟ—ଆଣ୍ଠୁ ପର୍ଯ୍ୟନ୍ତ ମାତ୍ର ବିସ୍ତୃତ । ଅତି ଖଣ୍ଡିଏ ଛୋଟ ବସ୍ତ୍ରରେ ସେ ଦେହ ଆଚ୍ଛାଦିତ କଲା । ତାହାର ଘନକୃଷ୍ଣ କେଶରେ କେତୋଟି ପୁଷ୍ପ ସଂଯୁକ୍ତ । ହାତରେ ବିବାହ ଶଙ୍ଖା, ରୁପାଖଡ଼ୁ, ପାଦରେ ନୂପୁର, ଗଳାରେ ପୋହଳାମାଳା ଓ ପୁଷ୍ପହାର । ବର କନ୍ୟାଙ୍କ ଆନନ୍ଦର ପରିସୀମା ରହିଲା ନାହିଁ ।

ପାଞ୍ଚ ଗ୍ରାମର ଆବାଳବୃଦ୍ଧବନିତା ସମସ୍ତେ ସମବେତ ହେଲେ । ପଲ୍ଲିଟି ଲୋକମାନଙ୍କ ଆନନ୍ଦକୋଳାହଳ, ବାଦ୍ୟଧ୍ୱନି, ଭେରୀଶବ୍ଦରେ ନିନାଦିତ, ଅରଣ୍ୟ ପ୍ରଦେଶ ମୁଖରିତ ହୋଇ ଉଠିଲା । ସମସ୍ତେ ଆହ୍ଲାଦରେ ନାଚିଲେ । ଭିଲ ସର୍ଦ୍ଦାର ଉମାଜୀଙ୍କ କନ୍ୟାର ବିବାହ—ଏଥିରେ ସନ୍ତୁଷ୍ଟ, ଆନନ୍ଦିତ ନ ହେବ ଏପରି ଭିଲ ଅଛି କିଏ ? ତେବେ କେତେକ ଜଣ ବୃଦ୍ଧ, ବୃଦ୍ଧା ଋଷିକୁମାରଙ୍କ ଅଦ୍ଭୁତ ପରିବର୍ତ୍ତନରେ ବିସ୍ମିତ ହୋଇ, ମାତଙ୍ଗୀ ଓ ତାହାର ପିତାମାତାଙ୍କୁ ମନେ ମନେ ନିନ୍ଦା କରିବାକୁ ଲାଗିଲେ । ଉମାଜୀ ସମ୍ମୁଖରେ ଆକ୍ଷେପ କରିବାକୁ କେହି ସାହସୀ ହୋଇ ପାରିଲେ ନାହିଁ । ଏ ବିବାହ ଫଳରେ ଚ୍ୟବନ ମୁନିଙ୍କ ଅଭିଶାପ ସର୍ଦ୍ଦାରଙ୍କ ଉପରେ ପଡ଼ିବ ବୋଲି ସେମାନଙ୍କର ଭୟ ହେଲା । ଯାହା ହେଉ ସମସ୍ତେ ମିଳି ମିଶି ସନ୍ତୋଷ ପ୍ରକାଶ କରି ବିବାହୋତ୍ସବରେ ମହା ଉତ୍ସାହରେ ମାତିଗଲେ ।

ସର୍ଦ୍ଦାରର କେତେକ ଜଣ ଅନୁଚର ନାନା ବନ ଜଙ୍ଗଲ ବୁଲି ଅନେକ ପଶୁ ଶିକାର କରି ଆଣିଥିଲେ । କେତେ ଯେ କୁକ୍କୁଟ, ଛାଗ,

ମେଷ ନିହତ ହେଲେ ତାହାର ସଂଖ୍ୟା ନାହିଁ । ବିବାହର କେତେକ ଦିନ ଆଗରୁ ବହୁ ପରିମାଣରେ ବିଭିନ୍ନ ମଦ୍ୟ ପ୍ରସ୍ତୁତ ହୋଇଥିଲା । ସମସ୍ତେ ସୁରାପାନ କଲେ, ମାଛ ମାଂସ ପ୍ରଭୃତି ଖାଦ୍ୟର ସଦ୍‌ବ୍ୟବହାର କଲେ । ବର କନ୍ୟାଙ୍କ ଚତୁର୍ଦ୍ଦିଗରେ କେତେକ ଜଣ ଆମନ୍ତ୍ରିତ ବ୍ୟକ୍ତି ଉପବିଷ୍ଟ ହେଲେ । ଅନ୍ୟ ଲୋକେ କେତେବେଳେ ହସନ୍ତି, କେତେ-ବେଳେ କରତାଳ ଦେଇ ନାଚନ୍ତି, କେତେବେଳେ ବା ବୃକ୍ଷାରୋହଣ କରି ନାନା ସଙ୍ଗୀତ ଗା'ନ୍ତି ।

ଦଳେ ଭିଲ ଯୁବତୀ ଚକ୍ରାକାରରେ ଠିଆ ହୋଇ ସୁମଧୁର ବଂଶୀ-ସ୍ୱରରେ ଗାନ କରି କରି ନୃତ୍ୟରେ ପ୍ରବୃତ୍ତ ହେଲେ । ସେମାନଙ୍କ ନୃତ୍ୟ କଳାକୌଶଳରେ ପୂର୍ଣ୍ଣ ନ ହେଲେହେଁ ଚମତ୍କାର, ଚିତ୍ତାକର୍ଷକ । ସେମା-ନଙ୍କ ନିକଟରେ କେତେକ ଜଣ ଯୁବକ ବିବିଧ ବାଦ୍ୟବାଦନରେ ନିଯୁକ୍ତ ହେଲେ । ବାଜଣା ମଧ୍ୟରେ ଉଲ୍ଲେଖ ଥିଲା ମର୍ଦ୍ଦଳ, ନାଗାର୍ଚ୍ଚି ବା ଧୁମ୍‌ସା । ସେହି ବାଦ୍ୟ ସଙ୍ଗେ ଯୁବତୀଦଳ ତାଳେ ତାଳେ ପାଦ ଉଠାଇ ନୃତ୍ୟ କରିବାକୁ ଲାଗିଲେ । ଭିଲ ଜାତିରେ କେବଳ ସ୍ତ୍ରୀମାନେ ନୃତ୍ୟ କରୁ-ଥିଲେ, ବାଦ୍ୟ ବଜାଉଥିଲେ ପୁରୁଷମାନେ । ସ୍ତ୍ରୀମାନେ ବହୁ ସମୟ ଧରି ଅବିଶ୍ରାନ୍ତ ଭାବରେ ନାଚିବାରେ ଅଭ୍ୟସ୍ତ ଥିଲେ; ଏଣୁ ନୃତ୍ୟ କରିବା ବେଳେ ମାତ୍ର ସେମାନେ ସୁରାପାନ କରୁଥିଲେ—ଅନ୍ୟ ସମୟରେ ନୁହେଁ ।

ନର୍ତ୍ତକୀଗଣଙ୍କ ସର୍ବାଙ୍ଗରୁ, ବେଶଭୂଷାରୁ ପଲ୍ଲି-ସୌନ୍ଦର୍ଯ୍ୟ ଫୁଟି ଉଠୁଥିଲା । କାହାର ମସ୍ତକର ଖୋସାରେ ନାନା ଜାତିର ଫୁଲ, କାହାର ମସ୍ତକରେ ବା ଖାଲି ପତ୍ର । ପୁଷ୍ପ ଭିଲ ସ୍ତ୍ରୀର ଅଦରର ଜିନିସ । ପୁଷ୍ପ, ଅଭାବରେ ସେମାନେ ମସ୍ତକରେ ବୃକ୍ଷର ପତ୍ର ଗୁଞ୍ଜି ରଖନ୍ତି । ବିବିଧ ବର୍ଣ୍ଣର ପୁଷ୍ପ ପତ୍ରରେ କେଶ ଶୋଭିତ କରି ସେମାନେ ନାଚିବାବେଳେ ମନେ

ହେଉଥିଲା, ଯେପରି ହାସ୍ୟମୟୀ ବନବାଳାବୃନ୍ଦ ନୃତ୍ୟ କରୁ ଅଛନ୍ତି । ନର୍ତ୍ତକୀମାନଙ୍କ କପାଳରେ ସିନ୍ଦୂର । ସମସ୍ତଙ୍କ ଅଧରରେ ମଧୁର ହାସ୍ୟ, ନୟନରେ ସରଳ ସୁନ୍ଦର କଟାକ୍ଷ ଖେଳ ବୁଲୁ ଥିଲା । ସେମାନେ ରୂପବତୀ ନ ହେଲେହେଁ ସୁଶ୍ରୀମଣ୍ଡିତା । ସେମାନଙ୍କ କୃଷ୍ଣ ବର୍ଣ୍ଣ ଶରୀର ଭିତରେ ଅତି ସୁନ୍ଦର ହୃଦୟ ନିହିତ । ପତିମାନେ ନିଷ୍ଠୁର, ଅତ୍ୟାଚାରୀ ସତ; ସ୍ତ୍ରୀମାନେ କିନ୍ତୁ ସରଳା, ସ୍ନେହମୟୀ, ଅତିଥିପରାୟଣା । ପୁରୁଷ ନିକଟରେ ସ୍ତ୍ରୀ ସଙ୍କୁଚିତା ନୁହେ—ପରଦା ବା ଅବଗୁଣ୍ଠନ ସେମାନଙ୍କ ସମାଜରେ ଆଦୌ ନ ଥିଲା । ପ୍ରକୃତିର କୋଳରେ ସେମାନେ ଜାତ, ପାଳିତ, ବର୍ଦ୍ଧିତ । ଅତଏବ ସେମାନଙ୍କର କାର୍ଯ୍ୟକଳାପ, ଭାବଭଙ୍ଗି, କଥାବାର୍ତ୍ତା, ନୃତ୍ୟ ଗୀତ ସବୁ ପ୍ରକୃତିର ଅନୁମୋଦିତ । କୃତ୍ରିମତା ମୋଟେ ନାହିଁ – ପ୍ରତି କାର୍ଯ୍ୟରୁ, ପ୍ରତି ବାକ୍ୟରୁ ଶୁଦ୍ଧ ସରଳତା ଝରି ପଡୁଥିଲା ।

ହାସ୍ୟର ଉଚ୍ଛ୍ୱସିତ ବନ୍ୟାରେ ଯୁବତୀମାନଙ୍କ ନୃତ୍ୟଜନିତ କ୍ଳାନ୍ତି, ଅବସାଦ ବିଦୂରିତ । ହାସ୍ୟ ଧରି ସେମାନେ ଯେପରି ଜନ୍ମଗ୍ରହଣ କରିଛନ୍ତି । ସେମାନଙ୍କ ନୃତ୍ୟରେ ବୀରତ୍ୱର ସ୍ପୃହା ପ୍ରତିବମ୍ବିତ । ସୁରାମତ୍ତ ଯୁବତୀଦଳ ନୃତ୍ୟଗୀତରେ ଏକାବେଳକେ ଆତ୍ମବିସ୍ମୃତ । ମସ୍ତକରୁ ପୁଷ୍ପ ପତ୍ର ଖସି-ପଡୁଛି, ସେଥିପ୍ରତି ଦୃଷ୍ଟି ନାହିଁ—ପରିଧେୟର କେତେକାଂଶ ଶିଥିଳ ହୋଇ ପଡୁଛି, ତାହା ପ୍ରତି ଲକ୍ଷ୍ୟ ନାହିଁ । ବାଦକ ଯୁବକମାନେ ସୁରାମତ୍ତ ହେବାରୁ ମଧ୍ୟ ମଧ୍ୟରେ ବାଦନରେ ତ୍ରୁଟୀ କରି ପକାଉଛନ୍ତି—ତ୍ରୁଟୀ ଧରିବାର ଉପାୟ ନାହିଁ । ସମସ୍ତେ ଯେ ମଦ୍ୟପାନ-ବିହ୍ୱଳ ।

ପରେ ପ୍ରଚଳିତ ପ୍ରଥା ଅନୁସାରେ ମାତଙ୍ଗୀ ନର୍ତ୍ତକୀଦଳ ମଧ୍ୟରେ ଠିଆ ହୋଇ ନୃତ୍ୟ ଆରମ୍ଭ କଲା । କି ମନୋହର ସେ ନୃତ୍ୟ ! ସାଗର-ତରଙ୍ଗ ଭୁଲି ଅଳସ ଲୀଳାରେ ଧାଇଁ ଆସୁଛି, ପୁନର୍ବାର ଯେପରି ସେତେବେଳେ

ବେଳାପଡ଼ନ୍ତ ହୋଇ ଧୀରେ ସମୁଦ୍ରଗର୍ଭରେ ଯାଇ ମିଶୁଛି । ସେତେବେଳେ ବୃଦ୍ଧ ଭିଲ-ପୁରୋହିତଙ୍କ ଇଙ୍ଗିତରେ ରତ୍ନାକର ହସହସମୁଖରେ ହଠାତ୍ ନର୍ତ୍ତକୀଦଳରେ ପ୍ରବେଶ କରି ନୃତ୍ୟରତା ମାତଙ୍ଗୀର ଲଲାଟରେ ସିନ୍ଦୂର ଲଗାଇ ଦେଲେ । ପରେ ତାହାକୁ ଆଲିଙ୍ଗନ କରି, ନେଇ ସେମାନଙ୍କ ମଧ୍ୟରୁ ଧାଇଁ ଆସିଲେ । ଏ ଥିଲା ଭିଲ-ବିବାହ ପ୍ରଥା ।

ବରକନ୍ୟା ବସିବାକ୍ଷଣି ସେମାନଙ୍କ ଆଗରେ ନର୍ତ୍ତକୀଗଣ ଆଉ ଏକ ପ୍ରକାର ନୃତ୍ୟ କଲେ । ଜଣକ ପଛେ ଜଣେ ଠିଆ ହେଲା । ପ୍ରତି ଯୁବତୀ ପୃଷ୍ଠଭାଗରେ ରହି କଟି ପାଖରେ ଦୁଇ ହାତରେ ଦୁଇ ଦଗରେ ଦୁଇ ଜଣଙ୍କ ହାତ ଧରି ଶ୍ରେଣୀବଦ୍ଧ ହୋଇ ନୃତ୍ୟ କରିବାକୁ ଲାଗିଲେ । ଏ ସମସ୍ତ ଆନନ୍ଦ ଉତ୍ସାହ ମଧ୍ୟରେ ବିବାହ ସରିଲା ।

ପରେ ସମସ୍ତେ ଗୋଟିଏ ବୃହତ୍ ବୃକ୍ଷ ନିକଟରେ ଯାଇ ଜୁଟି ହେଲେ । ବୃକ୍ଷଶାଖାରେ ଗୋଟିଏ ବିଶାଳକାୟ ଜୀବନ୍ତ ମହିଷର ଚାରି ପାଦ ବାନ୍ଧିଦେଲେ । ପଶୁଟି ଗର୍ଜ୍ଜନ କରି କରି ଝୁଲି ରହିଲା । ତଳେ ଅଗ୍ନି ଜଳି ଉଠିଲା । ସେଠାରେ ମଧ୍ୟ ବାଦ୍ୟବାଦନ, ନୃତ୍ୟ, ଗାନର ବିରାମ ନାହିଁ । କେତେକ ଜଣ ଯୁବକ ବଡ଼ ବଡ଼ ଛୁରି ଧରି ଅଗ୍ନିକୁ ଘେରି ଠିଆ ହେଲେ । ନାଚି ନାଚି ଗୀତ ଗାଇ ଗାଇ ଇଚ୍ଛାନୁସାରେ ଦୋଦୁଲ୍ୟମାନ ମହିଷ-ଦେହର ବିଭିନ୍ନ ଅଙ୍ଗରେ ଛୁରିକା ଆଘାତ କରି-ବାକୁ ଲାଗିଲେ । ମହିଷର ରକ୍ତଧାରା ଖଣ୍ଡ ଖଣ୍ଡ ମାଂସ ପ୍ରଜ୍ଜ୍ୱଳିତ ଅଗ୍ନି ଉପରେ ବର୍ଷିତ ହେଉଥାଏ, ଯୁଦ୍ଧମତ୍ତ ଘାତକମାନେ ଜଙ୍ଗଲ ପଶୁର କାତର ଗର୍ଜ୍ଜନ-ଧ୍ୱନିରେ ନିଜ ନିଜର ବୀଭତ୍ସ ସଙ୍ଗୀତଧ୍ୱନି ମିଳାଇ ଆନନ୍ଦରେ ନାଚୁଥାନ୍ତି । ଅଗ୍ନିକୁ ଘେରି ବସିଥିବା ଲୋକେ ପୂର୍ଣ୍ଣ ଦଗ୍ଧ, ଅର୍ଦ୍ଧ ଦଗ୍ଧ ମହିଷ-ମାଂସ ଖାଇବାରେ ଲାଗିଥାନ୍ତି । ମହିଷ-ରକ୍ତରେ ଅଗ୍ନି

କଣ୍ଟତ୍ ଶାନ୍ତ ହେବାର ଦେଖି ସେମାନେ ଅଗ୍ନିତ ଦେଇ ତାହା ଉଦ୍ଦୀପ୍ତ କରନ୍ତି । ମନୁଷ୍ୟଦେହର ସମସ୍ତ ମାଂସ କର୍ତ୍ତିତ, ଦଗ୍ଧ ହେବା ପରେ ସେହି ଲୁଣ୍ଠିତ, ଭୟଙ୍କର, ପୈଶାଚିକ ଉତ୍ସବ ସ୍ଥଗିତ ହେଲା ।

ମଧ୍ୟାହ୍ନର ଭାସ୍କର ଯେତେବେଳେ ଖରତର କିରଣବର୍ଷଣରେ ଶ୍ରାନ୍ତ କ୍ଳାନ୍ତ ହୋଇ ପଶ୍ଚିମ ଆକାଶରେ ଢଳି ପଡ଼ିଲେ, ତାଙ୍କର ସ୍ୱର୍ଣ୍ଣ ରଶ୍ମି ସେତେବେଳେ ହସି ହସି ସେହି ଅରଣ୍ୟପ୍ରଦେଶରେ ବିକ୍ଷିପ୍ତ ହୋଇ-ପଡ଼ିଲା । ତମସାଙ୍ଗରରେ ତମସ-ବସନାବୃତା ସନ୍ଧ୍ୟାଦେବୀ ଧ୍ୱାନ୍ତ-ସହଚରୀର କର ଧାରଣ କରି ଅବତରଣ କଲେ । ତମସା ବକ୍ଷରେ ଅସଂଖ୍ୟ ନୌକା ସଜ୍ଜିତ ହେଲା । ବର କନ୍ୟା ଯୁବକ ଯୁବତୀମାନଙ୍କୁ ଧରି ନୌକାରେ ଜଳବିହାର କରିବାକୁ ଲାଗିଲେ । ଯୁବତୀମାନଙ୍କ ଗାନରେ, ଯୁବକ-ମାନଙ୍କ ବାଦ୍ୟଧ୍ୱନିରେ ନଦୀ-ବକ୍ଷ ମୁଖରିତ ହେଲା, ଅରଣ୍ୟର ସାନ୍ଧ୍ୟ ବାୟୁ-ମଣ୍ଡଳ ଥରହର ହେଲା । କେତେ ଜଣ ଭିଲ ବନରେ ଶିକାର କରିବାରେ ନିଜ ନିଜକୁ ନିୟୋଜିତ କଲେ । ପଲ୍ଲିରେ କୌତୁକ କୋଳାହଳ ବରାବର ଚାଲିଥାଏ । କେତେକ ସମୟ ପରେ ନୌକା-ବିହାରଦଳ ଆଉ ଶିକାରଦଳ ପଲ୍ଲିକୁ ଫେରି ପାନଭୋଜନାଦି କଲେ ।

ଯାମିନୀଦେବୀ ସ୍ୱାମିଙ୍କ ଆଗମନ ପ୍ରତୀକ୍ଷାରେ ନିଜ ବେଶଭୂଷାରେ ତତ୍ପର ହେଲେ । କାନନର ପୁଷ୍ପକୋରକ ସବୁ ଫୁଟାଇ ମାଳା ଗୁନ୍ଥିଲେ । ପୁଷ୍ପହାରରେ, ପୁଷ୍ପବଳୟରେ, ପୁଷ୍ପମୁକୁଟରେ, ପୁଷ୍ପନିର୍ମିତ ବିବିଧ ଅଳଙ୍କାରରେ ନିଜ ଶରୀର ମଣ୍ଡିତ କଲେ—ଯେପରି ସେ ପୁଷ୍ପରାଣୀ ସାଜିଲେ । ପରେ ତାଙ୍କ ପ୍ରାଣପତି ଚନ୍ଦ୍ରଦେବ ହାସ୍ୟରଞ୍ଜିତ ମୁଖରେ ଦେଖା ଦେଲେ । ପ୍ରିୟାଙ୍କୁ ପୁଷ୍ପମୟୀ ଦେଖି ଅତିଶୟ ଆହ୍ଲାଦରେ ସେ ହାସ୍ୟର ମାତ୍ରା ବଢ଼ାଇଦେଲେ । ଅଣ୍ଟସ୍ତହୃଦୟା ଯାମିନୀ ସେତେବେଳେ

ଅନ୍ଧକାର-ଯବନିକାକୁ ବିଦାୟ ଦେଇ, ପତିସୋହାଗ ଲାଭ କରିବାରେ, ପତିଙ୍କୁ ହୃଦୟରେ ଧରିବାରେ ବ୍ୟସ୍ତ ହେଲେ । ଚନ୍ଦ୍ର-ଯାମିନୀଙ୍କ ଆନନ୍ଦରେ ଆନନ୍ଦ ଲାଭ କରିବା ଉଦ୍ଦେଶ୍ୟରେ ନବଦମ୍ପତି ରତ୍ନାକର ଓ ମାତଙ୍ଗୀ ବିରଳନକ୍ଷତ୍ର ନୀଳ ଆକାଶତଳେ ପର୍ବତ ନିକଟସ୍ଥ ସରୋବର ତୀରରେ ଗୋଟିଏ ଶାଳକୁଞ୍ଜକୋଳରେ ସହାସ୍ୟ ବଦନରେ ମଧୁର ସରସ ବିଶ୍ରମ୍ଭାଳାପରେ ପ୍ରମତ୍ତ ।

ଚତୁର୍ଦ୍ଦିଗରେ ଶୁଭ୍ର ଜ୍ୟୋତ୍ସ୍ନାଲୋକ । ଜ୍ୟୋତ୍ସ୍ନାଲୋକରେ ମାନବ-ହୃଦୟରେ ଅଭାବନୀୟ ପରିବର୍ତ୍ତନ ସୂଚିତ ହୋଇଥାଏ । ଜ୍ୟୋତ୍ସ୍ନାଲୋକରେ ଶିଳ୍ପୀର ଚକ୍ଷୁରେ ଧରଣୀ ଅଦୃଷ୍ଟପୂର୍ବ ନବୀନ ଲାବଣ୍ୟରେ ଉଦ୍ଭାସିତ ହୋଇ ଉଠେ । ଜ୍ୟୋତ୍ସ୍ନାଲୋକରେ କବିର କଳ୍ପନା ପୃଥିବୀ ତ୍ୟାଗ କରି ସ୍ୱପ୍ନରାଜ୍ୟରେ ବିଚରଣ କରେ । ଜ୍ୟୋତ୍ସ୍ନାଲୋକରେ ପ୍ରେମ ପ୍ରବଳ ହୋଇ ଉଠେ । ଦିବାଲୋକର ସାଧାରଣ ପ୍ରଣୟ ଜ୍ୟୋତ୍ସ୍ନାଲୋକରେ ଅସାଧାରଣ ହୋଇଥାଏ । ପ୍ରେମ ସୂର୍ଯ୍ୟାଲୋକରେ ସଂଯତ ରହେ—ଚନ୍ଦ୍ରାଲୋକରେ କୂଳପ୍ଲାବୀ ହୋଇଯାଏ । ଜ୍ୟୋତ୍ସ୍ନା-ପୁଲକିତ ଯାମିନୀରେ ରତ୍ନାକର ଓ ମାତଙ୍ଗୀଙ୍କ ପ୍ରେମ ଚନ୍ଦ୍ରଙ୍କ ଆକର୍ଷଣରେ ସାଗର ପରି ଉଚ୍ଛ୍ୱସିତ ହୋଇ ଉଠିଲା ।

ଉତ୍ଫୁଲ୍ଲପ୍ରାଣ ନବଦମ୍ପତିଙ୍କ ମଧୁର ହାସ୍ୟ ଦେଖି ପ୍ରଫୁଲ୍ଲହୃଦୟା ଯାମିନୀ ହସୁଛନ୍ତି, ବାରିଦହୀନ ଆକାଶରେ ନିଷ୍କଳଙ୍କ ନୀଳିମାବକ୍ଷର ଏକ ପାର୍ଶ୍ୱରେ ପ୍ରଫୁଲ୍ଲହୃଦୟ ଯାମିନୀ-ପତି ହସୁଛନ୍ତି—ଦୂରରେ ଦୁଇ ତିନୋଟି ନକ୍ଷତ୍ର ହସୁଛନ୍ତି । ସେହି ଦମ୍ପତିଙ୍କର ସେହି ସରସ ସୁନ୍ଦର ହାସ୍ୟ ଦେଖି କୁସୁମସମୂହ ହସୁଛନ୍ତି, ଦିଗ୍‌ବଧୂଗଣ, ନବପଲ୍ଲବପୁଞ୍ଜ, ଲତିକାଦଳ ହସୁଛନ୍ତି । ତରଙ୍ଗିଣୀବକ୍ଷରେ କନକ-ମୁକୁଟ ମସ୍ତକରେ ଧରି ଲହରୀ-

ବାଳାଗଣ ହସୁଅଛନ୍ତି । ଅମ୍ବର ହସୁଛନ୍ତି ସରୋବର-ସଲିଳରେ ଦଳେ ଦଳେ ଜ୍ୟୋତ୍ସ୍ନାଭରା କୁମୁଦନୀ—ନୀଳମାକୋଳରେ ଶୁଭ୍ର ଶ୍ୱେତ ମେଘମାଳା । ଚତୁର୍ଦ୍ଦିଗରେ ହାସ୍ୟ-ଲୀଳା, ହାସ୍ୟଧ୍ୱନି । କେତେକ ସମୟ ରତ୍ନାକର ପ୍ରିୟା ସହିତ ସରୋବରତଟରେ ଜ୍ୟୋତ୍ସ୍ନାଲୋକରେ ସ୍ନାତ ହୋଇ ଗୃହକୁ ଫେରଲେ—ଆନନ୍ଦ କୌତୁକରେ ଯାମିନୀ ଯାପନ କଲେ ।



୧୧

ସଂସାରରେ ମଜାର ସଂଖ୍ୟା ଅଗଣ୍ୟ, ଅନନ୍ତ । କୌଣସି କୌଣସି ବ୍ୟକ୍ତି କହୁଥାନ୍ତି—'ମୁଁ ଦୂରଦୃଷ୍ଟିଦର୍ଶନ ଗୁଣରେ ସଂସାରର ସକଳ ମଜା, ତାମସା ଦେଖିଅଛି ।' ଯେଉଁମାନେ ଏପରି କହନ୍ତି, ସେମାନେ ଯେ ନିତାନ୍ତ ଭ୍ରାନ୍ତ, ଏଥିରେ ସନ୍ଦେହ ନାହିଁ । ମନୁଷ୍ୟ ବରଂ ଆକାଶର ନକ୍ଷତ୍ର-ସଂଖ୍ୟା ଗଣି ଦେଇପାରେ; ତଥାପି ଏ ସଂସାରର ମଜା ଗଣିବାକୁ ନିତାନ୍ତ ଅକ୍ଷମ । ସ୍ୱପ୍ନରେ ସୁଦ୍ଧା ଯାହା କେବେ ସମ୍ଭବ ନୁହେଁ, ସେହି ସମସ୍ତ ମଜା ସମୟ-ସମୟରେ ସହଜରେ ମନୁଷ୍ୟ ସମ୍ମୁଖରେ ଆସି ନୃତ୍ୟ କରୁଥାଏ । ଯାହା କଳ୍ପନାର ଅତୀତ ତାହା ପର ମୁହୂର୍ତ୍ତରେ ବାସ୍ତବ ହୋଇ ଉଠେ—ଚନ୍ଦ୍ର ଭୂତଳରେ ଉଦିତ ହୁଏ, କୂପମଣ୍ଡୂକ ସ୍ୱର୍ଗକୁ ଉଠେ, ରାଜା ଭିକ୍ଷୁକ ହୁଏ, ଭିକ୍ଷୁକ ରାଜା ହୁଏ, ଚୋର ସାଧୁ ହୁଏ, ସାଧୁ ଚୋର ହୁଏ ।

ରତ୍ନାକର ବର୍ତ୍ତମାନ ପ୍ରେମର ଉପାସକ । ସେ ବୁଝିଛନ୍ତି, ପ୍ରେମ ସଉଦାଗରର ନୁହେଁ, ସାଧୁର—ପ୍ରେମ ପଣ୍ୟଦ୍ରବ୍ୟ ନୁହେଁ । ପ୍ରେମରତ୍ନର ଆକର ରତ୍ନାକରଙ୍କ ବିବେଚନାରେ, ପ୍ରେମର ବିକା କିଣା ନାହିଁ, ବିନିମୟ ନାହିଁ—ପ୍ରେମ ଅମୂଲ୍ୟ । ପ୍ରେମ ବାସ୍ତବିକ ଜୀବନରେ ସୁଖ, ଯାତନାରେ ସାନ୍ତ୍ୱନା, ଅସ୍ଥିରତାରେ ଶାନ୍ତି । ନବୀନ ପ୍ରେମିକ ମାତଙ୍ଗୀ-ପ୍ରେମକୁ ସର୍ବସ୍ୱ ମନେ କରି ସେଥିରେ ବୁଡ଼ି ରହିଲେ ।

କନ୍ୟା ପକ୍ଷରେ ପିତ୍ରାଳୟ-ବାସ ନିୟମ-ବ୍ୟତିକ୍ରମ ହେଲେହେଁ, ସୁଖକର । ମାତଙ୍ଗୀ ପକ୍ଷରେ ବି ପିତୃଗୃହବାସ ସୁଖକର ନ ହୁଅନ୍ତା କିପରି ? ବିଶେଷତଃ ଯାହାର ଘରକୁ ନିଜର ଘର କରି ନେବାକୁ ହୁଏ, ଯାହାର ପ୍ରେମରେ ରମଣୀ ନୂତନ ଜୀବନ ଲାଭ କରେ, ନୂତନରେ ଅଭ୍ୟସ୍ତା ହୋଇ ଶେଷରେ ପରିଚିତ ପୁରାତନକୁହିଁ ନୂତନ ମନେକରେ,

ସେହି ସ୍ୱାମୀ ମଧ୍ୟ ନିକଟରେ । ରତ୍ନାକରଙ୍କର ନିଜର ଘର ବୋଲି ତ କିଛି ନାହିଁ । ସେ ଯେଉଁଠାରେ ଅଛନ୍ତି, ସେହି ସ୍ଥାନହିଁ ମାତଙ୍ଗୀର ଶ୍ୱଶୁରଗୃହ, ପତିଗୃହ । ଅତଏବ ମାତଙ୍ଗୀ ପିତାମାତାଙ୍କ ନିକଟରେ ରହି ପିତୃଗୃହ-ସୁଖ, ରତ୍ନାକରଙ୍କ ନିକଟରେ ରହି ପତିଗୃହ-ସୁଖ ସଙ୍ଗେ ସଙ୍ଗେ ଉପଭୋଗ କରି ନିଜକୁ ଧନ୍ୟ ମଣିଲା । ସେ ହୃଦୟଙ୍ଗମ କଲା, ପୃଥିବୀରେ ପତିହିଁ ସ୍ତ୍ରୀର ଏକ ମାତ୍ର ଗତି, ଦେବତା, ଭଗବାନ ।

ରତ୍ନାକର ମାତଙ୍ଗୀକୁ ସଙ୍ଗେ ଧରି କେବେ ବନବିହାର, କେବେ ପଲ୍ଲି-ଭ୍ରମଣ, କେବେ ବା ନଦୀଯାତ୍ରା କରିବାକୁ ଲାଗିଲେ । ଅଳ୍ପ ଦିନ ମଧ୍ୟରେ ସେ ସର୍ଦ୍ଦାରର ଭିଲ ଅନୁଚରମାନଙ୍କର ପରମ ଆତ୍ମୀୟ, ବିଶ୍ୱସ୍ତ, ପ୍ରୀତିପାତ୍ର ହୋଇ ଉଠିଲେ । ସେ ପ୍ରାୟ ପ୍ରତ୍ୟହ ପ୍ରତି ଭିଲ ପଲ୍ଲିକି ଯାଇ ଲୋକଙ୍କର ସୁଖ ଦୁଃଖ, ଅଭାବ ଅଭିଯୋଗ ବୁଝୁଥିଲେ । ତାଙ୍କ ରୂପ ଗୁଣ, ଶକ୍ତି ସାମର୍ଥ୍ୟ, ସ୍ନେହ ସହାନୁଭୂତି, ମଧୁରାଳାପ ଓ ସରଳ ଆଚରଣରେ ଭିଲମାନେ ସନ୍ତୁଷ୍ଟ ହେଉଥିଲେ । ଅସ୍ତେ ଅସ୍ତେ ସେ ଭିଲ ଜାତିର ଆଚାର ବ୍ୟବହାର, ରୀତି ନୀତି ସବୁ ଶିକ୍ଷା କରିବାକୁ ଲାଗିଲେ । ଭିଲଜାତିର ଖାଦ୍ୟ, ପାନୀୟ ତାଙ୍କର ଆଉ ଅ-ଖାଦ୍ୟ, ଅ-ପାନୀୟ ରହିଲା ନାହିଁ । ଭିଲର ଏପରି କୌଣସି କାର୍ଯ୍ୟ ରହିଲା ନାହିଁ ଯାହା କରିବାକୁ ରତ୍ନାକର କୁଣ୍ଠିତ ବା ଅସମର୍ଥ ।

ସେ କେବଳ ନାରୀ ପ୍ରେମରେ ଆସକ୍ତ ନ ରହି, କ୍ରମେ ଧନୁର୍ବିଦ୍ୟା ଓ ଶିକାର ଶିକ୍ଷା କଲେ, ବୀରତ୍ୱ ଦେଖାଇବାକୁ ଆରମ୍ଭ କଲେ । ଋଷିପୁତ୍ର ହୋଇଥିବା ବେଳେ ସେ ମଲ୍ଲ ଯୁଦ୍ଧ, ବିବିଧ ବ୍ୟାୟାମ କ୍ରୀଡ଼ା, ବୃକ୍ଷାରୋହଣ, ସନ୍ତରଣରେ ଖୁବ୍ ପାରଦର୍ଶିତା ଲାଭ କରିଥିଲେ । ଏହା ଭିନ୍ନ ବର୍ତ୍ତମାନ ସେ ଶରସନ୍ଧାନ, ଅସିଚାଳନା, ମୁଦ୍ଗରଚାଳନା, ଅଶ୍ୱାରୋହଣ, ବର୍ଚ୍ଛା, ଛୁରି,

ଟାଙ୍ଗି ଇତ୍ୟାଦି ଅସ୍ତ୍ର ବ୍ୟବହାର, ନୌକାଚାଳନ ଇତ୍ୟାଦି କାର୍ଯ୍ୟରେ ଅଭ୍ୟସ୍ତ ହୋଇ ଅତ୍ୟଳ୍ପ କାଳରେ ଧୂରନ୍ଧର ହୋଇ ଉଠିଲେ । ମାନବ ନିଜ ଦେହ ଓ ମନର ଶକ୍ତି ଯେଉଁ ଦିଗରେ ଚଳାଏ ଶକ୍ତି ସେଇ ଦିଗରେ ଖେଳିଯାଏ । ପ୍ରବୃତ୍ତି ଓ ସାଧନା ଭେଦରେ ମନୁଷ୍ୟର ଶକ୍ତି ସତ୍ କିମ୍ବା ଅସତ୍ ମାର୍ଗରେ ଚାଳିତ ହୋଇଥାଏ । ରତ୍ନାକରଙ୍କ ହୃଦୟ ଓ ବାହୁରେ ଢେର ଶକ୍ତି ଥିଲା । ଯୌବନ ପ୍ରାରମ୍ଭରେ ସେ ଉତ୍ତମରୂପେ ନିଜ ଶକ୍ତିର ଉପାସନା କରି ତାହାକୁ ସତ୍ ଦିଗରେ ଚଳାଉ ଥିଲେ । ବର୍ତ୍ତମାନ କିନ୍ତୁ ସେହି ଶକ୍ତିର ଗତି ବଦଳାଇ ଦେଲେ—ଅସତ୍ ଦିଗରେ ଚଳାଇବାକୁ ଦୃଢ଼ସଂକଳ୍ପ ହେଲେ । ତାଙ୍କୁ ଅଳ୍ପ କାଳ ମଧ୍ୟରେ ସମସ୍ତ ଭିଲ-ବିଦ୍ୟାରେ ନିପୁଣତା ଲାଭ କରିବାର ଦେଖି, ଉମାଜୀ, ତାହାର ପତ୍ନୀ ଓ ପୁତ୍ରୀ, ଅନ୍ୟ ଭିଲମାନେ ମୁଗ୍ଧ ଚକିତ ହୋଇଗଲେ ।

ଭିଲ ଯୁବକମାନଙ୍କ ମଧ୍ୟରେ କେବେ କେବେ ଧନୁର୍ବିଦ୍ୟା, ଅସି-ଚାଳନା, ସନ୍ତରଣ, ନୌକାଚାଳନ, ଶିକାର, ଅଶ୍ୱାରୋହଣ, ମଲ୍ଲଯୁଦ୍ଧ, ମୁଦ୍ଗର ବ୍ୟବହାର ଇତ୍ୟାଦି ଶାରୀରିକ କ୍ରୀଡ଼ାକୌତୁକରେ ପ୍ରତିଯୋଗିତା ହେଉଥିଲା । ପ୍ରତିଯୋଗିତାରେ ରତ୍ନାକର ସବୁବେଳେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସମସ୍ତେ ତାଙ୍କର ପ୍ରଶଂସା ନ କରି ରହି ପାରୁ ନ ଥିଲେ । ଉମାଜୀର ଆନନ୍ଦ କହିଲେ ନ ସରେ ! ସୁନିପୁଣ ଧନୁର୍ଦ୍ଧର ରତ୍ନାକର ଆକାଶର ପକ୍ଷୀ, ଜଳର ମତ୍ସ୍ୟ, ବନର ହରିଣକୁ ଗତି କରିବାବେଳେ ଶର ବିଦ୍ଧ ସଂହାର କରି ପାରୁଥିଲେ ।

ଏପରି ଦୁଇ ବର୍ଷ କଟିଗଲା । ରତ୍ନାକର କ୍ରମେ ଦସ୍ୟୁବୃତ୍ତି, ଅତ୍ୟାଚାର ଶିଖିଲେ, ଚୋର ଡକାଏତି ଶିଖିଲେ—ଅଧିକ ଶିଖିଲେ ନରହତ୍ୟା, ନାରୀ-ହରଣ । ଅଗେ ଅଗେ ସେ ଭିଲମାନଙ୍କ ସଙ୍ଗେ ମିଶି ଚୋରି ଡକାୟତି, ଲୁଣ୍ଠନ, ନରହତ୍ୟା ଇତ୍ୟାଦି ଦୁଷ୍କର୍ମ ଅଭ୍ୟାସ କଲେ । ପରେ ଅପୂର୍ବ ଦମ୍ଭ, ସାହସରେ ଏକାକୀ ଚୌର୍ଯ୍ୟ, ହତ୍ୟା କରିବାକୁ

ଲାଗିଲେ । ଦେଖୁଁ ଦେଖୁଁ ଭିଲମାନଙ୍କ ମଧ୍ୟରେ ସେ ସର୍ବଶ୍ରେଷ୍ଠ ତସ୍କର ଲୁଣ୍ଠକ ଓ ନରହନ୍ତା ହୋଇ ଉଠିଲେ । ଚୋର ଡକାଏତି କରିବା-ବେଳେ ଭିଲମାନେ ଅନେକ ସମୟରେ ବିଭିନ୍ନ କପଟ ରୂପ ଧାରଣ କରୁଥିଲେ । ରତ୍ନାକର କ୍ରମଶଃ ଛଦ୍ମବେଶ ଧାରଣରେ ଅତ୍ୟନ୍ତ କୁଶଳତା ଲାଭ କଲେ ।

ଆହାର ଭେଦରେ ସାଧାରଣତଃ ମନୁଷ୍ୟର ପ୍ରକୃତି ଚରିତ୍ର ଭିନ୍ନ ଭିନ୍ନ ଧରଣର ହୋଇଥାଏ । ସାତ୍ତ୍ୱିକ ଖାଦ୍ୟରେ ସାତ୍ତ୍ୱିକ ଭାବ, ତାମସିକ ଆହାରରେ ତାମସିକ ଭାବର ଉଦ୍ରେକ ହେବା ଅସ୍ୱାଭାବିକ ନୁହେ । ଋଷି-ଆଶ୍ରମରେ ଥିବା ସମୟରେ, ଯଥେଷ୍ଟ କାୟିକ-ଶକ୍ତି ସତ୍ତ୍ୱେ, ରତ୍ନାକର ଥିଲେ ଧୀରପ୍ରକୃତି, ଶାନ୍ତସ୍ୱଭାବ, ଦୟାର୍ଦ୍ରହୃଦୟ, କ୍ଷମାଶୀଳ, ନମ୍ର । ଉତ୍ତେଜକ ମଦ୍ୟ ମାଂସ ଆହାରରେ, ଅନ୍ୟାନ୍ୟ ପୈଶାଚିକ ଖାଦ୍ୟରେ ରତ୍ନାକରଙ୍କ ହୃଦୟ କୋମଳତା ଛାଡ଼ି ଉଗ୍ରତା ଧାରଣ କଲା—ତାଙ୍କ ହୃଦୟରେ ନିଷ୍ଠୁରତା, ପାଶବିକତା ଦୟା ଓ କ୍ଷମାର ସ୍ଥାନ ମାଡ଼ି ବସିଲା ।

ମାତଙ୍ଗୀ—ବିବାହର ପ୍ରାୟ ତିନି ବର୍ଷ ପରେ ଉମାଜୀ ରତ୍ନାକରଙ୍କୁ ସର୍ଦ୍ଦାର ପଦରେ ଅଭିଷିକ୍ତ କରି କର୍ମ-କ୍ଷେତ୍ରରୁ ଅବସର ନେଲା । ରତ୍ନାକର ଉମାଜୀ-ସଂପତ୍ତିର ପୂର୍ଣ୍ଣ ଅଧିକାରୀ ହେଲେ । ଉମାଜୀର ସମସ୍ତ ଅନୁଚର ତାଙ୍କର ସଂପୂର୍ଣ୍ଣ ଅଧୀନ ହେଲେ । ଭିଲମାନେ ରତ୍ନାକରଙ୍କୁ ଭଲ ପାଉଥିଲେ, ସ୍ନେହ ସମ୍ମାନ କରୁଥିଲେ—ବର୍ତ୍ତମାନ ଅଧିକ ଭଲ ପାଇଲେ, ଅଧିକ ସ୍ନେହ ସମ୍ମାନ କଲେ । ସେମାନେ ତାଙ୍କର ପ୍ରତ୍ୟେକ ଆଦେଶ ଆନନ୍ଦରେ ପାଳନ କରିବାକୁ ଲାଗିଲେ । ନୂତନ ସର୍ଦ୍ଦାର ଭିଲମାନଙ୍କ ପ୍ରତି ସହାନୁଭୂତି ଦେଖାଇ ସେମାନଙ୍କ ସଙ୍ଗେ ମିଳିମିଶି ଭୟଙ୍କର ଲୁଣ୍ଠନ, ହତ୍ୟା ଇତ୍ୟାଦି ଜଘନ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେଲେ ।

୯ ୨

ଗଙ୍ଗା, ତମସା ତୀରସ୍ଥ ଅରଣ୍ୟର ଭିଲମାନେ ଯେଉଁ ରାଜ୍ୟର ପ୍ରଜା, ସେ ରାଜ୍ୟର ଶାସକ ଥିଲେ ଅଙ୍ଗଧ୍ୱଜ । ତାଙ୍କର ତିନି ଜଣ ମନ୍ତ୍ରୀ, ସେନାପତି, ସୈନ୍ୟ ଅନେକ ଥିଲେ । ରାଜାଙ୍କର ଜଣେ ପୁତ୍ର, ଜଣେ କନ୍ୟା । କନ୍ୟା ଚତୁର୍ଦ୍ଦଶବର୍ଷବୟସ୍କା, ଜ୍ୟେଷ୍ଠା— ରାଜକୁମାରଙ୍କର ବୟସ ବାର ବର୍ଷ ।

ଭିଲ ପ୍ରଜାମାନେ ଅଙ୍ଗଧ୍ୱଜଙ୍କୁ ରାଜସ୍ୱ, କେବେ କେବେ 'ଭେଟି' ଦେଉଥିଲେ । ସେମାନେ ରାଜାଙ୍କୁ ନାନା ଶସ୍ୟ, ଫଳମୂଳ, ଯୋଗାଉଥିଲେ । ଭିଲମାନେ ରାଜାଙ୍କୁ ଭୟ ଭକ୍ତି କରି ତାଙ୍କ ଶାସନ ମାନି ଚଳୁଥିଲେ । ଅଥଚ ସେମାନଙ୍କ ପ୍ରତି ରାଜାଙ୍କର, ରାଜ କର୍ମଚାରୀ ଓ ନଗରବାସିମାନଙ୍କର ଉତ୍କଟ ଘୃଣା, ଉପେକ୍ଷା ଥିଲା । ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ମ୍ଳେଚ୍ଛ, ପତିତ, ଅସ୍ପୃଶ୍ୟ ଜ୍ଞାନ କରି ସବୁବେଳେ ଘୃଣା କରୁଥିଲେ । ଭିଲ ପ୍ରଜାଙ୍କ ପ୍ରତି ରାଜାଙ୍କର ସାହାଯ୍ୟ, ସହାନୁଭୂତି ଆଦୌ ନ ଥିଲା— ସେମାନଙ୍କ ଅଭାବ ଅସୁବିଧା ପ୍ରତି ରାଜା ଜମାରୁ ଦୃଷ୍ଟି ଦେଉ ନ ଥାନ୍ତି, ସେମାନଙ୍କ ଅଭିଯୋଗରେ କ୍ରୂକ୍ଷେପ କରୁ ନ ଥାନ୍ତି । କୌଣସି ବର୍ଷ ଫସଲ ନଷ୍ଟ ହୋଇଗଲେ ଭିଲମାନେ ରାଜସ୍ୱ ନ ନେବାପାଇଁ ଅଥବା ରାଜସ୍ୱର ପରିମାଣ ହ୍ରାସ କରିବା ପାଇଁ ରାଜାଙ୍କୁ ଗୁହାରି କରୁଥିଲେ; କିନ୍ତୁ ସେମାନଙ୍କ ଅନୁନୟ ବିନୟରେ ରାଜା କର୍ଣ୍ଣପାତ ନ କରି ସେମାନଙ୍କ ଦୁଃଖକଷ୍ଟର ମାତ୍ରା ବଢ଼ାଉଥିଲେ । ରାଜକର୍ମଚାରୀମାନେ ଭିଲ ବିରୁଦ୍ଧରେ ରାଜାଙ୍କ ମନ ବିଷାକ୍ତ କରି ଉଠାଉଥିଲେ । ରାଜା କର୍ମଚାରୀଙ୍କ ସାହଚର୍ଯ୍ୟରେ ରାଜ୍ୟ ଶାସନ ଚଳାଇଥାଏ । ରାଜାର ଆଚରଣ, ରାଜ୍ୟଶାସନ କର୍ମଚାରୀମାନଙ୍କ ବ୍ୟବହାର, ଚରିତ୍ର ଉପରେ ସଂପୂର୍ଣ୍ଣ ନିର୍ଭର କରେ । ଦୁର୍ବଳଚିତ୍ତ ରାଜା ନିକଟରେ ଅତ୍ୟାଚାରୀ କର୍ମଚାରୀମାନେ ସତ୍ୟକୁ ମିଥ୍ୟା,

ମିଥ୍ୟାକୁ ସତ୍ୟରୂପେ ଅଗତ କରଥାନ୍ତି । ସେମାନଙ୍କ କଥାରେ, ଇଙ୍ଗିତ ଓ ପରାମର୍ଶରେ ରାଜ୍ୟଶାସନଗତ ଗୃହୀତ ହେବାର କଥା । ଭିଲମାନେ ଦୁର୍ଭିକ୍ଷପୀଡ଼ିତ ହେଲେ ମଧ୍ୟ ରାଜାଙ୍କ ସାହାଯ୍ୟ ପାଉ ନ ଥିଲେ । ରାଜ-କର୍ମଚାରୀମାନେ ଭିଲମାନଙ୍କ ଉପରେ ଭୟଙ୍କର ଅତ୍ୟାଚାର କରୁଥିଲେ, କେବେ କେବେ ସେମାନଙ୍କ ଅର୍ଜିତ, ସଂଚିତ ସଂପତ୍ତି ବଳ ପ୍ରୟୋଗ କରି ନେଇ ଯାଉଥିଲେ । ପେଟକୁ ଦେଇ ପିଠିକି ମାରିବା ନୀତି ଧରିଥିଲେ ପ୍ରଜାମାନେ କେତେ ଦୂର ଆଶ୍ୱସ୍ତ ହେଉଥାନ୍ତେ । କିନ୍ତୁ ରାଜକର୍ମଚାରୀଦଳ ପେଟକୁ କିଛି ନ ଦେଇ ପିଠିରେ ଉଗ୍ର ପ୍ରହାର କରୁଥିଲେ । ଆପତ୍ତି, ଅଭିଯୋଗ କରିବା ଭିଲମାନେ ରାଜଦ୍ୱାରରେ ଦଣ୍ଡିତ ହେଉଥିଲେ ।

ଭିଲ ପ୍ରଜାଙ୍କ ମଧ୍ୟରୁ କେତେକ ଜଣ ମୁଣ୍ଡ ପୋତି ରାଜ-ଅତ୍ୟାଚାର, ଉତ୍ପୀଡ଼ନ ସହ୍ୟ କଲେ । ଆଉ କେତେକ ଜଣ ବିଦ୍ରୋହୀ ହୋଇ ଉଠିଲେ । ରାଜା ଅତ୍ୟାଚାରୀ, ରାଜକର୍ମଚାରୀଗଣ ପ୍ରଜାପୀଡ଼କ ହେଲେ ପ୍ରଜାମାନଙ୍କ ମଧ୍ୟରେ ବିଦ୍ରୋହାନଳ ଜଳି ଉଠିବା ବିଚିତ୍ର ନୁହେଁ । ବିଦ୍ରୋହୀ ଭିଲପଲ୍ଲି ମଧ୍ୟରେ ପ୍ରଧାନ ଥିଲା ଉମାଜୀର ପାଞ୍ଚ ଗ୍ରାମ—ଉମାଜୀ ଥିଲା ନେତା । ରାଜା, ରାଜକର୍ମଚାରୀ ଓ ନଗରବାସିଙ୍କ ଉପରେ ବିଦ୍ରୋହୀ ଭିଲଗଣଙ୍କର ପ୍ରଚଣ୍ଡ କ୍ରୋଧ, ଆକ୍ରୋଶ । ଅତଏବ ସେମାନେ ରାଜ୍ୟ ମଧ୍ୟରେ ଚୌର୍ଯ୍ୟ, ଲୁଣ୍ଠନ କରୁଥିଲେ, ସୁଯୋଗ ସୁବିଧା ଦେଖି ନଗରବାସିଙ୍କୁ ହତ୍ୟା କରି ଧନ ଦ୍ରବ୍ୟ ଲୁଟି କରି ନେଉଥିଲେ । କ୍ରମଶଃ ରାଜଦଳ ଓ ଭିଲଦଳ ମଧ୍ୟରେ ଭୟଙ୍କର ଶତ୍ରୁତା ଜନ୍ମିଲା । ରାଜାଙ୍କର ଭିଲ-ପୀଡ଼ନ ବୃଦ୍ଧି ପ୍ରାପ୍ତ ହେଲା । ରାଜା ବାରମ୍ବାର ସୈନ୍ୟ ପଠାଇ ବିଦ୍ରୋହୀ-ପଲ୍ଲି ଆକ୍ରମଣ, ବିଦ୍ରୋହୀଙ୍କୁ ବନ୍ଦୀ କରିବାକୁ ଲାଗିଲେ । ଆକ୍ରମଣରେ ଉଭୟ ଦଳର ଅନେକ ଲୋକ ପ୍ରାଣ ହରାଇଲେ । ପ୍ରତିହିଂସା-ପରାୟଣ ଭିଲମାନେ ଚୋରି, ଡକାଏତିରେ ଏପରି ଅଭ୍ୟସ୍ତ, ପ୍ରବୃତ୍ତ ହୋଇ

ପଡ଼ିଲେ ଯେ, କାଳକ୍ରମେ ରାଜ୍ୟର ଯେ କୌଣସି ଅନାର୍ଯ୍ୟେତର ପ୍ରଜାଙ୍କୁ ବାଟରେ ଲଗି ପ୍ରହାର, ହତ୍ୟା କରିବାକୁ ପଶ୍ଚାତ୍‌ପଦ ହେଲେ ନାହିଁ। ରାଜା ପ୍ରତ୍ୟହ ଗୁପ୍ତଚରମାନଙ୍କ ମୁଖରୁ ବିଦ୍ରୋହୀମାନଙ୍କ ଗତିବିଧି ବୁଝୁଥିଲେ, ଭିଲମାନେ ବି ନିଜ ଗୁପ୍ତଚରମାନଙ୍କ ସାହାଯ୍ୟରେ ରାଜ୍ୟର ସକଳ ସମ୍ବାଦ ସଂଗ୍ରହ କରୁଥିଲେ।

ରତ୍ନାକର ଭିଲସର୍ଦ୍ଦାର ହୋଇ ଉମାଜୀର ଭୀଷଣ ଦୀକ୍ଷାରେ ସଂପୂର୍ଣ୍ଣ ଦୀକ୍ଷିତ ହେଲେ। ତାଙ୍କ ହୃଦୟରେ ଆର୍ଯ୍ୟ-ବିଦ୍ୱେଷ ବହ୍ନି ହିନ ଚଣ୍ଡ ମୂର୍ତ୍ତି ଧରି ଉଠୁଥାଏ। ଭିଲଜାତିର ମଙ୍ଗଳ ଲାଗି ଚୋରି, ଡକାଏତି, ହତ୍ୟା, ଲୁଣ୍ଠନରେ ଜୀବନୋତ୍ସର୍ଗ କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ। ଆର୍ଯ୍ୟଗଣଙ୍କ ବିବେଚନାରେ ରତ୍ନାକର ନରପିଶାଚ ଅପେକ୍ଷା ବି ନୃଶଂସ ଓ କଠୋର ହେଲେହେଁ, ସେ ଭିଲଜାତି ଠାରୁ ଯେ ଦେବତା ତୁଲ୍ୟ ଶ୍ରଦ୍ଧା, ଭକ୍ତି ପ୍ରାପ୍ତ ହେଲେ ଏହା କହିବା ବାହୁଲ୍ୟ ମାତ୍ର। ସେ କୌପୀନ ପିନ୍ଧି, ହସ୍ତରେ ଗୁରୁଭାର ଲୌହ ମୁଦ୍ଗର ଓ ଧନୁ, ସ୍କନ୍ଧରେ ଶରାସନ ଧରି ପ୍ରତ୍ୟହ ଅରଣ୍ୟ ପଥରେ ପାହାଡ଼ ବା ବୃକ୍ଷଶାଖାରେ ପଥିକମାନଙ୍କୁ ଜଗି ରହନ୍ତି। ପଥିକକୁ ଦେଖିବାକ୍ଷଣି ଉଗ୍ର ହୁଙ୍କାର କରି ପଥ ଓଗାଳି ତାହାକୁ ନିଷ୍ଠୁର ଭାବରେ ହତ୍ୟା କରି ତାହାର ସମସ୍ତ ପଦାର୍ଥ—ଏପରିକି ପରିଧେୟ ପର୍ଯ୍ୟନ୍ତ ନେଇ ଯା'ନ୍ତି। ଅରଣ୍ୟରେ ଦସ୍ୟୁ ରତ୍ନାକରର ଯେପରି ନିର୍ଭୟ ରାଜତ୍ୱ ଅପ୍ରତିହତ ଭାବରେ ଚାଲିଲା। ତାଙ୍କର ବିଶାଳ ଶରୀର, ଘନକୃଷ୍ଣ ଶ୍ମଶ୍ରୁ ଓ ଦୀର୍ଘକେଶ, ଲୌହ ମୁଦ୍ଗର ଇତ୍ୟାଦି ଅସ୍ତ୍ର ରକ୍ତବର୍ଣ୍ଣ ନିଷ୍ଠୁର ଚକ୍ଷୁ ଦେଖି କେତେକ ପଥିକ ଭୟରେ ଜୀବନ ହରାଉଥିଲେ। କେହି କେହି ଧରି ଯାଉଥିବା ଜିନିସ ପତ୍ର ରତ୍ନାକରଚରଣରେ ଥୋଇ ଦେଇ ଜୀବନ ରକ୍ଷା କରୁଥିଲେ। ରତ୍ନାକର କାତର ପ୍ରାର୍ଥନା ଅଗ୍ରାହ୍ୟ କରି, ଜିନିସ ସଙ୍ଗେ ଜୀବନ ମଧ୍ୟ ନେଉଥିଲେ। ଏତିକି ନୁହେ,

ରାଜ୍ୟର ରାଜଧାନୀ ଓ ଆର୍ଯ୍ୟପଲ୍ଲିର ପ୍ରତି ଗୃହରେ ପଶି ଲୋକଙ୍କୁ ମାରି ସେମାନଙ୍କର ଧନ ଦ୍ରବ୍ୟ, ଗାଈ ଗୋରୁ, କେବେ କେବେ ସ୍ତ୍ରୀ କନ୍ୟା ଅପହରଣ କରି ଆଣିବା ସକାଶେ ରତ୍ନାକର ଚତୁର୍ଦ୍ଦିଗରେ ଅନୁଚର-ମାନଙ୍କୁ ପଠାଉଥିଲେ । ଉତ୍ପୀଡ଼ିତ ପ୍ରଜାମାନେ ରାଜଦ୍ୱାରରେ ଘନ ଘନ ସାହାଯ୍ୟଭିକ୍ଷା କରିବାକୁ ଲାଗିଲେ । ମୁନି ଋଷିମାନେ, ସେମାନଙ୍କର ଆଶ୍ରମ ମଧ୍ୟ ରତ୍ନାକର-ଅତ୍ୟାଚାରରୁ ନିସ୍ତାର ପାଉ ନ ଥିଲେ । ତାଙ୍କର ଜଘନ୍ୟ କାର୍ଯ୍ୟରେ ଋଷିମାନେ ମର୍ମାହତ ହୋଇ ପଡ଼ିଲେ । ରତ୍ନାକରଙ୍କର ଉଚ୍ଚ ନୀଚ, ଋଷି ଶୂଦ୍ର, ରାଜା ପ୍ରଜା ଭେଦଭାବ ରହିଲା ନାହିଁ— ଅନାର୍ଯ୍ୟ ଭଳି ଯାହାକୁ ଦେଖିଲେ ହତ୍ୟା କଲେ ।

ଦେଖୁଁ ଦେଖୁଁ ରାଜ୍ୟତମାମ "ଚୋର ରତ୍ନାକର" ବା "ରତନଚୋର" ନାମ ରାଷ୍ଟ୍ର ହୋଇଗଲା - ସମସ୍ତଙ୍କ ପ୍ରାଣରେ ମହା ଆତଙ୍କ ଆଣିଲା । ଲୋକେ ଅରଣ୍ୟ ମାର୍ଗରେ ଯାତ୍ରା କରିବାକୁ ଡରିଲେ । 'ରତନ-ଚୋର' ନାମ କାନରେ ପଡ଼ିବାମାତ୍ରକେ ଆବାଲବୃଦ୍ଧବନିତା ସମସ୍ତେ ଭୟରେ ଥରହର ହେଉଥିଲେ । ରାତି ସମୟରେ କେହି ମିଥ୍ୟା ଭୟ ଦେଖାଇ କୌତୁକରେ "ରତନ ଆସିଲା" ବୋଲି ଚୀତ୍କାର କଲେ ଲୋକେ ଭୟ-ଭୀତ ହୋଇ ଗୃହର ଦ୍ୱାର ବନ୍ଦ କରି ଦେଉଥିଲେ । ଛୋଟ ପିଲାମାନେ ସେହି ଭୟଙ୍କର ନାମ ଶୁଣିବା ମାତ୍ରକେ ପିତା ମାତାଙ୍କୁ ଭିଡ଼ି ଧରୁଥିଲେ । ରତନ-ଚୋରକୁ ଧରି ଆଣି ପ୍ରାଣଦଣ୍ଡ ଦେବାକୁ ରାଜା ଅତ୍ୟଧିକ ପ୍ରବଳ ପ୍ରୟାସ କରିବାକୁ ଲାଗିଲେ ।

୧୩

ଠିକ୍ ବ୍ରାହ୍ମ ମୁହୂର୍ତ୍ତ । ପୂର୍ବ ଦଗର ଆକାଶରେ ଗୋଟିଏ ଲୋହିତ ରାଗ ଦେଖା ଦେଇଅଛି । ଅଥଚ ଉତ୍ତର ଓ ଦକ୍ଷିଣରେ ବର୍ତ୍ତମାନ ସୁଦ୍ଧା ଗୋଟିଏ ଦୁଇଟି ତାରା ପଥଭ୍ରଷ୍ଟ ବାଳକ ତୁଲ୍ୟ କମ୍ପିତ ହେଉଛନ୍ତି । ପ୍ରମୁଦିତ ଉଷାର ଆଗମନ-ଗୌରବ ବୃଦ୍ଧି ପାଉ ବିବିଧ ବିହଙ୍ଗ କଳରବ କରି ଉଠୁଛନ୍ତି । ନିଦ୍ରାବିମୁଗ୍ଧ ନରନାରୀ ବର୍ତ୍ତମାନ ପ୍ରଭାତ ଉପସ୍ଥିତ ବୋଲି ବୁଝିଛନ୍ତି । ଠିକ୍ ଏହି ସମୟରେ ଗୋଟିଏ ନୌକା ରତ୍ନାକରଙ୍କ ପଲ୍ଲୀ ନିକଟସ୍ଥ ତମସା-ତୀରରେ ଆସି ଲାଗିଲା । ନୌକାରୁ ଦୁଇ ଜଣ ପୁରୁଷ ଅବତରଣ କରି ପଲ୍ଲୀ ଅଭିମୁଖରେ ଖୁବ୍ ଉଦ୍ବେଗସହ ଅଗ୍ରସର ହେଲେ । ଯିବାବେଳେ ଜଣେ ହସି ହସି ସଙ୍ଗୀକୁ କହିଲା,—

"ବିବାହ କରୁଚ ସଉଦାଗରୁ,
ଯୌତୁକ ପାଇବେ ରତ୍ନାକର ।"

"ହାଃ ହାଃ ହାଃ ଅଛି ଗୀତଟାଏ ତ ! ଭାଇ ! ସଉଦାଗରଟା ଜୁଆଇଁଙ୍କ ସଙ୍ଗେ କେତେ ଜିନିସ ଦେଉଛି ! କେତେ ସୁନା ରୁପା ଗହଣା, କେତେ ପେଡ଼ି ପେଟରା, ପାଟପତନ !"

"ଏଥିରେ ଆମର ତିନି ବର୍ଷ କାଳ ସୁଖରେ ଚଳିଯିବ ।"

ରତ୍ନାକରଙ୍କ ପଲ୍ଲୀ ଠାରୁ ପ୍ରାୟ ଦଶ କୋଶ ଦୂରରେ, ତମସା ତୀରରେ ମଧୁପୁର ବୋଲି ଗୋଟିଏ ବୃହତ୍ ଗ୍ରାମ । ନାନା ଶ୍ରେଣୀର ହିନ୍ଦୁ ସେଠାରେ ବାସ କରୁଥିଲେ । ଗୋପାନନ୍ଦ ନାମକ ସୌଦାଗର ମଧୁପୁରର ସର୍ବପ୍ରଧାନ ପ୍ରଜା, ଅତି ଧନବାନ୍ ଅଧିବାସୀ । ଅଙ୍ଗଧ୍ଵଜଙ୍କ ରାଜ୍ୟର ପ୍ରତିଷ୍ଠାନ୍ଵିତ ବଣିକମାନଙ୍କ ମଧ୍ୟରେ ଗୋପାନନ୍ଦ ଅନ୍ୟତମ । ତାଙ୍କର ଗୋଟିଏ କନ୍ୟା—ତିନି ଜଣ ବିବାହିତା, କନିଷ୍ଠା ମାତ୍ର ଅବି-

ବାହିତା ଥିଲା । ପୂର୍ବୋକ୍ତ ନୌକାରୋହୀଦ୍ୱୟ ଯେଉଁ ଦିନ ପ୍ରଭାତରେ ରତ୍ନାକର ପଲ୍ଲୀରେ ଉପନୀତ ହେଲେ, ତାହାର ପୂର୍ବ ରାତ୍ରି ଗୋପାନନ୍ଦଙ୍କ ଚତୁର୍ଥ କନ୍ୟାର ବିବାହୋତ୍ସବ ମହା ସମାରୋହରେ ଅନୁଷ୍ଠିତ ହେଲା । ରାଜ୍ୟର ବିଖ୍ୟାତ ବଣିକ, ପ୍ରଧାନ ଧନୀର କନ୍ୟା-ବିବାହ କାହିଁକି ବା ଆଡ଼ମ୍ବରରେ ନ ହୁଅନ୍ତା ? ଗୋପାନନ୍ଦଙ୍କ ପ୍ରତିଷ୍ଠା ଓ ଅବସ୍ଥା ଅନୁରୂପ ଯୌତୁକ ସମ୍ଭାର ପ୍ରସ୍ତୁତ ହେଲା । ବଣିକ ସ୍ଥିର କଲେ, ବିବାହ-ରାତ୍ରିର ପରବର୍ତ୍ତୀ ଦିବସ ଅତି ପ୍ରତ୍ୟୁଷରେ ନବବିବାହିତା ଦୁହିତାକୁ ତାହାର ଶ୍ୱଶୁରାଳୟକୁ ପଠାଇବେ ।

ବଡ଼ ସକାଳେ ତମସା ବକ୍ଷରେ ଛ ଖଣ୍ଡି ବଡ଼ ଡଙ୍ଗା ଗୋଟିକ ପଛରେ ଗୋଟିଏ ସଜ୍ଜିତ ହେଲା । ପ୍ରଥମ ଡଙ୍ଗାରେ ଗୋପାନନ୍ଦଙ୍କର ଦଶ ଜଣ ଅନୁଚର, ଦ୍ୱିତୀୟ ଡଙ୍ଗାରେ ତାଙ୍କର ଜାମାତା, କନ୍ୟା ଆଉ ପାଞ୍ଚ ଜଣ ଯୁବତୀ ବସିଲେ । ତୃତୀୟ, ଚତୁର୍ଥ ଓ ପଞ୍ଚମ ନୌକା ଯୌତୁକ-ଜିନିଷରେ ପୂର୍ଣ୍ଣ ହେଲା । ଶେଷ ନୌକାଟିରେ ଆଉ ଦଶ ଜଣ ରକ୍ଷକ ବସିଲେ । ଗୋପାନନ୍ଦ ପ୍ରସନ୍ନବଦନ ଜାମାତାକୁ, ସ୍ନେହରୁଦ୍ୟମାନା ଦୁହିତାକୁ ହର୍ଷ-ବିଷାଦ-ଯୁକ୍ତ ହୃଦୟରେ ବିଦାୟ ଦେଇ ନୌକା ଚଳାଇବାକୁ ସେବକଗଣଙ୍କୁ ଆଦେଶ କଲେ । ତମସା-ଜଳରେ ଛ ଗୋଟି ନୌକା ପ୍ରାଭାତିକ ବାୟୁରେ ହଲି ହଲି ଚାଲିବାକୁ ଲାଗିଲା ।

ଉପରେ ଯେଉଁ ଦୁଇଜଣ ନୌକାରୋହୀଙ୍କ କଥା କହାଯାଇଛି, ସେମାନେ ଥିଲେ ଗୁପ୍ତଚର—ସର୍ଦ୍ଦାର ରତ୍ନାକରଙ୍କର ବିଶ୍ୱସ୍ତ ଅନୁଚର । ସଉଦାଗରଙ୍କ ନୌକାସକଳ ରତ୍ନାକରଙ୍କ ପଲ୍ଲୀ ବାଟରେ ଯିବାର କଥା । ସେ ଦିନ ସକାଳେ ଦୁହେଁ ଏ କଥା ସର୍ଦ୍ଦାରଙ୍କୁ ଜଣାଇଲେ । ଦୁହିଙ୍କ ମୁଖରୁ ସଉଦାଗରଙ୍କ ଯୌତୁକ ଉପକରଣର ଆଡ଼ମ୍ବର ବର୍ଣ୍ଣନା

ଶୁଣି ଅନ୍ୟାନ୍ୟ ଭିଲ ଅନୁଚରଙ୍କ ଭୁଶ୍ରୁ ଲୋତ-ଜାଲ ଖସିବାକୁ ଲାଗିଲା । ଗୋପାନନ୍ଦଙ୍କର ଡଙ୍ଗା ସବୁ ଯେଉଁ ସମୟରେ ସର୍ଦ୍ଦାର-ପଲ୍ଲୀ ନିକଟରେ ପହଞ୍ଚିବାର କଥା, ସେହି ସମୟ ଠିକ୍ ଅନୁମାନ କରି ତାହାର କିଛି କ୍ଷଣ ଆଗରୁ ରତ୍ନାକର ସଶସ୍ତ୍ର ପଚିଶ ଜଣ ଅନୁଚରଙ୍କୁ ସଙ୍ଗେ ଧରି ଯାଇ ନଦୀତୀରସ୍ଥ ବନରେ ଅପେକ୍ଷା କଲେ । କେହି ବୃକ୍ଷ-ଶାଖାରେ, କେହି ବୃକ୍ଷାନ୍ତରାଳରେ, କେହି କେହି ବା ଘନଗୁଳ୍ମର ପୃଷ୍ଠ ଭାଗରେ ଛପି ରହିଲେ । ମଧ୍ୟ ମଧ୍ୟରେ 'ବିବାହ କରିବ ସଉଦାଗର, ଯୌତୁକ ପାଇବେ ରତ୍ନାକର'—ଏହା ଗୀତ ହେବାକ୍ଷଣି ଭିଲମାନଙ୍କ ବୀଭତ୍ସ ହାସ୍ୟରୋଳରେ ନଦୀତୀର ମୁଖରିତ ହୋଇ ଉଠେ, ସର୍ଦ୍ଦାରଙ୍କ ଅଧର ପ୍ରାନ୍ତରେ ନିର୍ମ୍ମମ ମନ୍ଦହାସ ଖେଳଯାଏ ।

ଦେଖୁଁ ଦେଖୁଁ ବଣିକ ବରକନ୍ୟାଙ୍କ ଦୁର୍ଯୋଗ, ଭିଲମାନଙ୍କର ସୁଯୋଗ ଉପସ୍ଥିତ ହେଲା । ଛ ଗୋଟି ନୌକା ଭିଲପଲ୍ଲୀର କ୍ରମେ ନିକଟବର୍ତ୍ତୀ ହେଲା । ଦୁଇ ଜଣ ଭିଲ ତମସାର ଜଳଧାରରେ ନୌକାକୁ ମୁଖ କରି ଠିଆ ହୋଇ ଜୋରରେ ଭେରୀ ବଜାଇବାକୁ ଲାଗିଲେ । ଅନ୍ୟ ଭିଲମାନେ ଲୁଚି ରହିଥିଲେ । ଭିଲ ଦୁହିଁଙ୍କର ବାରମ୍ବାର ଶିଙ୍ଗା ନାଦ ଶୁଣି, ସଙ୍ଗେ ସଙ୍ଗେ ସେମାନଙ୍କର ହସ୍ତସଙ୍କେତ ଦେଖି ସେମା-ନଙ୍କୁ ବିଶ୍ୱାସ କରି ବିପଦାଶଙ୍କାରେ ସଉଦାଗରଙ୍କ ଅନୁଚରଗଣ ସେଠାରେ ଡଙ୍ଗା ସବୁ ବନ୍ଦ କରିଦେଲେ । ସେତେବେଳେ ନୌକା-ରୋହିମାନଙ୍କୁ ଏପରି ଭେରୀ ବାଦନରେ ଭାବୀ ବିପଦର ସୂଚନା ଦିଆଯାଉ ଥିଲା ଏବଂ ଏ ସଙ୍କେତ ପାଇ ପଥିକମାନେ ସତର୍କତା ଅବଲମ୍ବନ କରୁ ଥିଲେ । ନୌକାରୋହିମାନେ ଭିଲ ଦୁହିଁଙ୍କ ଠାରୁ ଶୁଣିଲେ, କିଛି ଦୂର ଆଗରେ ଦଳେ ଡକାଏତ ବସିଛନ୍ତି । ଭୟରେ ସମସ୍ତେ ନୌକାକୁ ଉଠି ତୀରରେ ଠିଆ ହେଲେ ।

ସେତେବେଳେ ସେଇ ଗୀତ ଶୁଭିଲା—'ବିବାହ କରିଚ ସଉଦାଗର, ଯୌତୁକ ପାଇବେ ରତ୍ନାକର' । 'ରତ୍ନାକର' ନାମ କାନରେ ପଡ଼ିବା ମାତ୍ରକେ ବଣିକଜାମାତା, ବଣିକକନ୍ୟା ଓ ଅନ୍ୟ ଯାତ୍ରିମାନେ ଚମକି ପଡ଼ିଲେ, ଭୟରେ ଥରିବାକୁ ଲାଗିଲେ । ସମସ୍ତେ ଏକାବେଳକେ ନିର୍ବାକ୍ ! ସେତେବେଳେ ସ୍ତମ୍ଭିତ, ଭୀତ ତ୍ରସ୍ତ ହେବା ଭିନ୍ନ ସେମାନଙ୍କର ଯେପରି ଅନ୍ୟ କାର୍ଯ୍ୟ ନ ଥିଲା । ଦେଖୁଁ ଦେଖୁଁ ଭିଲମାନେ ବିକଟ ଚିତ୍କାର କରି ସେଠାରେ ରୁଣ୍ଡ ହୋଇଗଲେ । ସଉଦାଗରଙ୍କ ଅନୁଚର ଓ ଭିଲମାନଙ୍କ ମଧ୍ୟରେ ଲଢ଼େଇ ଲାଗିଗଲା । ଅଧିକ ସଂଖ୍ୟକ ସଶସ୍ତ୍ର ଭିଲ ତସ୍କରମାନଙ୍କ ଆଗରେ ୧୦ । ୧୫ ଜଣ ନିରସ୍ତ୍ର ଲୋକ କରିପାରିବେ କଣ ? ଗୋପାନନ୍ଦଙ୍କ ଶୁକରମାନେ ନିର୍ଦ୍ଦୟ ଭାବରେ ନିହତ ହେଲେ । ରତ୍ନାକର ମୁଖରେ କ୍ରୂର ପ୍ରସନ୍ନତା ଫୁଟାଇ ବଣିକ-ଜାମାତାର ଗଳା ଚିପି ଧରି କହିଲେ—' ହି ଆସ୍ପର୍ଦ୍ଧା ତୋର ବାଳକ ! ବାଟରେ ରତ୍ନାକର ଅଛି ବୋଲି ଜାଣି ଶୁଣି କି ସାହସରେ ଏ ବାଟେ ଆସିଚୁ ? ଗୀତ ଶୁଣିଲୁ ତ — 'ବିବାହ କରିଚ ସଉଦାଗର, ଯୌତୁକ ପାଇବେ ରତ୍ନାକର ?'

ଏହା କହି ଖଡ଼୍‌ଗରେ ବଣିକ-କୁମାରର ବିବାହ-ମୁକୁଟ-ଶୋଭିତ ମସ୍ତକକୁ ତାହାର ବରବେଶ-ମଣ୍ଡିତ ଶରୀରରୁ ଛିନ୍ନ କରି ନଦୀରେ ନିକ୍ଷେପ କରିଦେଲେ । ତାଙ୍କ ଆଦେଶରେ ଶବ ସବୁ ନଦୀ ଜଳରେ ନିକ୍ଷିପ୍ତ ହେଲା । ଶେଷରେ ରତ୍ନାକର ମୂର୍ଚ୍ଛିତା ବଣିକ-କନ୍ୟାକୁ ଟେକି ନେଇ ତମସା-ସ୍ରୋତରେ ଭସାଇ ଦେଲେ । ପରେ ତାଙ୍କ ଅନୁଚରଗଣ ଯୌତୁକ ଦ୍ରବ୍ୟ ସହିତ ପାଞ୍ଚ ଜଣ ଯୁବତୀଙ୍କି ବୋହି ପଲ୍ଲୀକି ଫେରିଲେ ।

ଗୃହରେ ପହଞ୍ଚି ରତନ ସର୍ଦ୍ଦାର ଲୁଣ୍ଠିତ ଯୌତୁକ ପଦାର୍ଥର

ଅର୍ଦ୍ଧାଂଶ ନିଜ ଭଣ୍ଡାରରେ ରଖି ଅବଶିଷ୍ଟ ଭାଗ ଅନୁଚରଦଳ ମଧ୍ୟରେ ବିତରଣ କଲେ । ଦୁହିତା ଯୁବତୀମାନଙ୍କୁ ମାତଙ୍ଗୀ ନିକଟରେ ଛାଡ଼ିଲେ । ବନ୍ଦିନୀ ଯୁବତୀମାନେ ଅଜାତ୍ୟା ମାତଙ୍ଗୀର ସେବିକା ହୋଇ ରହିଲେ— ଗଭୀର ମନୋବେଦନା ଭୋଗ କଲେ । କିନ୍ତୁ ତରୁଣୀମୂଳର ସ୍ନେହାଳାପରେ ମାତଙ୍ଗୀ ଅତ୍ୟଳ୍ପ ସମୟରେ ସ୍ୱାଧୀନତା-ଚ୍ୟୁତା ପାଞ୍ଚ ଜଣ ଆର୍ଯ୍ୟ ପରିଚାରିକାଙ୍କୁ ନିଜ ସହଚରୀ ରୂପେ ରଖି ସେମାନଙ୍କ ନିର୍ବାସନ-ସନ୍ତାପ କେତେକ ପରିମାଣରେ ଦୂର କଲା ।

ପରେ, ସେ ବନ ପର୍ଯ୍ୟନ୍ତ ରହିାକର ଯେଉଁ ଲୋକଙ୍କୁ ନିଜ ହାତରେ ହତ୍ୟା କରିଥିଲେ ସେମାନଙ୍କ ସଂଖ୍ୟା ଗଣି ବସିଲେ । ପ୍ରତ୍ୟହ ସେ କେତେ ଜଣ ଆର୍ଯ୍ୟ ସ୍ତ୍ରୀ ପୁରୁଷଙ୍କୁ ମାରନ୍ତି, କେତେ ଧନ ରତ୍ନ ଲୁଟି କରି ଆଣନ୍ତି ତାହାର ହିସାବ ଦେଖି ଆନନ୍ଦାନୁଭବ କରୁଥିଲେ । ଏପରି ଆନନ୍ଦରେ ଅଧୀର ହୋଇ ବସିଥିବା ବେଳେ ହଠାତ୍ ଜଣେ ଭିଲ ଆସି ତାଙ୍କୁ ଜଣାଇଲା ଯେ, ପଲ୍ଲୀର ପାର୍ଶ୍ୱ-ପଥରେ ଦୁଇ ଗୋଟି ଶକଟ ଯାଉଅଛି ଏବଂ ସେଥିରେ ଗୁଡ଼ିଏ ଜଣ ପୁରୁଷ, ଗୁଡ଼ିଏ ଜଣ ସ୍ତ୍ରୀ ବହୁମୂଲ୍ୟ ବେଶଭୂଷା ଓ ଅଳଙ୍କାରରେ ମଣ୍ଡିତ ହୋଇ ଯାତ୍ରା କରୁଛନ୍ତି । ପୁଣି ନର-ବଧର, ଧନଲୁଣ୍ଠର ମାହେନ୍ଦ୍ର ମୁହୂର୍ତ୍ତ ଉପସ୍ଥିତ ।

ଆଉ ବିଳମ୍ବ ନ କରି ରହିାକର ନିଜ ଦଳ ସହ ଶକଟ ନିକଟକୁ ଧାଇଁ ଗଲେ । ଶକଟ-ଗତି ବନ୍ଦ କରି ଶକଟଗୁଡ଼ିକ ଦୁହିଙ୍କି ଘେରିକଲେ । ତାଙ୍କ ଅନୁଚରଗଣ ଯାତ୍ରିମାନଙ୍କ ଦେହରେ ଯାହା ଯାହା ଥିଲା ସବୁ ଜୋରରେ କାଢ଼ି ନେଇ, ସେମାନଙ୍କୁ ନିକଟସ୍ଥ କ୍ଷୁଦ୍ର ପାହାଡ଼ ଉପରକୁ ଟାଣି ନେଲେ । ବିପନ୍ନ ଯାତ୍ରିମଣ୍ଡଳର ହୃଦୟଭେଦକାରକ ଆର୍ତ୍ତନାଦ ଓ ଅତ୍ୟାଚାରୀ ଅନୁଚରମାନଙ୍କ ପୈଶାଚିକ ହାସ୍ୟ-ଧ୍ୱନିରେ

ଉତ୍ସାହିତ ହୋଇ ରତ୍ନାକର ସେହି ସ୍ତ୍ରୀ ପୁରୁଷମାନଙ୍କୁ, ଜଣକ ପରେ ଜଣକୁ ଧରି, ପାହାଡ଼ ଉପରୁ ତଳକୁ ଖେଳନା ପରି ଫିଙ୍ଗିଦେଲେ ।

ନରହତ୍ୟା, ଚୋରି ଡ଼କାଏତି କରିବା ସମୟରେ ରତ୍ନାକରଙ୍କ ମନରେ ଆଦୌ ଦ୍ୱିଧା ବୋଧ ହେଉ ନ ଥିଲା । ବରଂ ତାଙ୍କର ମନେ ହେଉଥିଲା ଯେ, ଏ ଅତ୍ୟାଚାର, ପାପକର୍ମ ସବୁ ଈଶ୍ୱରଙ୍କ ଅଭିପ୍ରେତ । ମାନବ ସତ୍ କର୍ମ୍ମ ଅସତ୍ ଅପ୍ରୀତ୍ରି କାର୍ଯ୍ୟ କରିବାକୁ ଅଗ୍ରସର ହେବା ବେଳେ ମନେ କରେ, ଅନୁକୂଳ ବିଷୟ ଭଗବାନଙ୍କ ପ୍ରେରିତ । ସେ ଖରସ୍ରୋତା ନଦୀ ତୁଲ୍ୟ ଅନୁକୂଳ ବାୟୁର ସାହାଯ୍ୟ ଗ୍ରହଣ କରେ—ପ୍ରତିକୂଳ ଘଟନା ସବୁ କୌଣସି ପ୍ରକାରେ ଉଡ଼ାଇ ଦେବାକୁ ଚେଷ୍ଟା କରେ । ରତ୍ନାକରଙ୍କର ଦୃଢ଼ ଧାରଣା—ଏ ସମସ୍ତ ଅତ୍ୟାଚାର ଅନାଚାର ଦ୍ୱାରା ସେ ଆର୍ଯ୍ୟମାନଙ୍କ ଧୃଷ୍ଟତାର ଉପଯୁକ୍ତ ଶାସ୍ତି ଦେଉଛନ୍ତି ।



୧୪

ଦିନେ ପ୍ରାତଃକାଳରେ ରତ୍ନାକର ବନପଥର ପାର୍ଶ୍ୱରେ ଗୋଟିଏ ବୃକ୍ଷ ଶାଖାରେ ଏକାକୀ ବସିଥିଲେ, ଏହି ସମୟରେ ଜଣେ ଅଶ୍ୱାରୋହୀ ତମସାତୀରର ଦିଗରୁ ବନ ମଧ୍ୟରେ ପ୍ରବେଶ କରିବାକୁ ଆରମ୍ଭ କଲା । ତାହାକୁ ବହୁ ଦୂରରୁ ଦେଖିପାରି ରତ୍ନାକର ଚଞ୍ଚଳ ଉଠି ବନପଥ ପାର୍ଶ୍ୱସ୍ଥିତ ଗୋଟିଏ ବୃକ୍ଷକାଣ୍ଡରେ ଗୋଟିଏ ଦୀର୍ଘ ରଜ୍ଜୁର ଏକ ପ୍ରାନ୍ତ ବାନ୍ଧି ଦେଲେ, ରଜ୍ଜୁର ଅନ୍ୟ ପ୍ରାନ୍ତଟି ଧରି ଅପର ପାର୍ଶ୍ୱରେ ବସି ରହିଲେ । ଅଶ୍ୱଟି ରଜ୍ଜୁର ଠିକ ନିକଟବର୍ତ୍ତୀ ହେବା କ୍ଷଣି ରତ୍ନାକର ରଜ୍ଜୁଟି ହଠାତ୍ ଉପରକୁ ଉଠାଇଦେଲେ । ଅଶ୍ୱ ସହସା ଭୂପତିତ ହୋଇଗଲା, ଆରୋହୀ ଅଶ୍ୱପୃଷ୍ଠରୁ ସ୍ଖଳିତ ହୋଇ କିଛି ଦୂରରେ ଯାଇ ମୂର୍ଚ୍ଛିତ ହୋଇ ପଡ଼ିଲା । ରତ୍ନାକର ବିଦ୍ୟୁତ୍‌ବେଗରେ ଧାଇଁ ଯାଇ ମୂର୍ଚ୍ଛିତ ପୁରୁଷକୁ ଉଗ୍ର ମୁଦ୍ଗରାଘାତରେ ଚିର ନିଦ୍ରିତ କରିଦେଲେ ।

ପୁରୁଷର ବେଶଭୂଷା ଓ ତରବାରି ଦେଖି ରତ୍ନାକର ବୁଝି ପାରିଲେ, ସେ ଜଣୈକ ରାଜକର୍ମଚାରୀ । ସେ ମୃତ ବ୍ୟକ୍ତିର ଶରୀରରୁ ଖଡ୍ଗ, ପରିଚ୍ଛଦ, ଆଭରଣ ଇତ୍ୟାଦି ଉନ୍ମୋଚନ କରି ସେ ସବୁ ଗୋଟିଏ ବୃକ୍ଷ ମୂଳରେ ସ୍ଥାପନ କଲେ । ପରେ ଆହତ ଅଶ୍ୱକୁ ବୃକ୍ଷରେ ବାନ୍ଧି ସେଠାରେ ବସିଲେ । ବସିବାର ଅବ୍ୟବହିତ ପରେ, ଚ୍ୟବନ-ଆଶ୍ରମର ସ୍ମୃତି ତାଙ୍କ ମନରେ ଯୁଗପତ ଉଦିତ ହେଲା । ତାଙ୍କ ପ୍ରାଣକୁ ହଠାତ୍ ପଶ୍ଚାତ୍ତାପ ଆସି ସ୍ପର୍ଶ କଲା । ତାଙ୍କ ଦେହ, ମନ ଅବସନ୍ନ ହୋଇ ପଡ଼ିଲା, ହାତରୁ ମୁଦ୍‌ଗରଟି ଖସି ପଡ଼ିଲା । ସେ ବାମ କରପଦରେ ମସ୍ତକ ନ୍ୟସ୍ତ କରି ଗଭୀର ଚିନ୍ତାରେ ବୁଡ଼ିଗଲେ ।

ସ୍ମୃତିର ବଜ୍ରସୂଚି ମାନବ ହୃଦୟର ଯେଉଁ ସ୍ଥାନରେ ବିଦ୍ଧ ହୁଏ

ସେ ସ୍ଥାନ ଦଗ୍ଧ ହୁଏ ନାହିଁ, ଅଥଚ ତାହାର ପାର୍ଶ୍ୱସ୍ଥିତ ସ୍ଥାନ ପୋଡ଼ି ଭସ୍ମ ହୋଇଯାଏ । ସ୍ମୃତିର ଧୀର ତାପରେ ଜୀବ ଦୁର୍ବଳ ହୁଏ— ସ୍ମୃତିର ତାଡ଼ନାରେ ମନୁଷ୍ୟ ବଞ୍ଚି ମଧ୍ୟ ମରି ରହେ । ସ୍ମୃତିର ସୁଖ-ଜଡ଼ତାରେ ମନୁଷ୍ୟସମାଜ ଗତିଶୂନ୍ୟ ହୁଏ, ସ୍ଥବିର ହୋଇଯାଏ । "ଯାହା ଥିଲା ଆଉ ହେବ ନାହିଁ, ଯାହା ଦେଖିଛୁ ଆଉ ଦେଖିବ ନାହିଁ ।"— ଏ ଚିନ୍ତା ମନୁଷ୍ୟର ମନକୁ ନୈରାଶ୍ୟର ଶୂନ୍ୟତାରେ ଅସ୍ତିତ୍ୱହୀନ କରିପକାଏ । ସ୍ମୃତି କେତେବେଳେ ଆକାଂକ୍ଷାମୟୀ, କେତେ-ବେଳେ ଅନୁତାପମୟୀ, କେତେବେଳେ ବା ଈର୍ଷାମୟୀ । "ଯାହା ଗଲା, ତାହା ଚିରଦିନ ପାଇଁ ଗଲା—ଆଉ ଆସିବ ନାହିଁ, ଆଉ ହୋଇ ପାରିବ ନାହିଁ । ପ୍ରାଣପଣ କଲେ ବି ତାହା ଆଉ ମୋର ହେବ ନାହିଁ"— ଏହି ସ୍ମୃତି ନୈରାଶ୍ୟରେ ପୂର୍ଣ୍ଣ ହେଲେ ମଧ୍ୟ ଆକାଂକ୍ଷାମୟୀ । "ସେତେବେଳେ ଯଦି ସହଜ ଔଦ୍ଧତ୍ୟ ବଶରେ ଅଧର୍ମ କରି ନ ଥାନ୍ତି, ସେତେବେଳେ ଯଦି ଐଶ୍ୱର୍ଯ୍ୟ ମୋହରେ ଆତ୍ମବିସ୍ମୃତ ନ ହୋଇ ବିଜ୍ଞ ବିବେକୀ ଭଳି କାର୍ଯ୍ୟ କରି ଥାନ୍ତି, ତାହାହେଲେ ହୁଏ ତ ମୋର ଏ ଦଶା ହୋଇ ନ ଥାନ୍ତା, ମୋତେ ଧୂଳିରେ ଲୋଟିବାକୁ ହୋଇ ନ ଥାନ୍ତା"— ଏ ସ୍ମୃତି ଅନୁ-ତାପମୟୀ । "ଯାହା ହେବାର ହୋଇ ଯାଇଛି, ଯାହା ହେବାର ଅଛି ହେବଇ ହେବ । ତେବେ ମୋର ଯାହା ଥିଲା ସେପରି ଆଉ କାହାର ନାହିଁ, ସେପରି ଆଉ କାହାର ହେବ ନାହିଁ"—ଏ ସ୍ମୃତି ଈର୍ଷାମୟୀ । ଏହି ସ୍ମୃତିର ବିପାକରେ ପଡ଼ିଲେ ମନୁଷ୍ୟ କ୍ରମେ ସଜୀବ ପ୍ରସ୍ତରବତ୍ ହୋଇ ପଡ଼େ ।

ବିସ୍ମୃତିର ବିକାଶରେ ଭଗବତ୍ କୃପାର ସୂଚନା—ବିସ୍ମୃତିର ଆବିର୍ଭାବରେ ଭଗବାନଙ୍କ 'କରୁଣାସାଗର' ନାମର ପରିଚୟ । ବିସ୍ମୃତି କାଳର ଗୁଣ, କାଳ କଳ୍ପତରୁ—ବିସ୍ମୃତି ସେଇ ତରୁବିଜଡ଼ିତା କଳ୍ପ-

ଲଢ଼କା । ସ୍ମୃତିର ରୁକ୍ଷ ବୃଶ୍ଚିକ-ଦଂଶନରେ ମନୁଷ୍ୟ ଆତ୍ମହତ୍ୟା କରି ଥାଏ । ବିସ୍ମୃତିର ଶୀତଳ ପ୍ରଲେପରେ ହୃତ୍ପିଣ୍ଡର କ୍ଷତ ମୁଖର ସମସ୍ତ ଜ୍ୱାଳା ଲିଭିଯାଏ— ଶାନ୍ତିର ସୁଶୀତଳ କୋଳରେ ଶୟନ କରି ମନୁଷ୍ୟ ଗାଢ଼ ନିଦ୍ରାରେ ଅଭିଭୂତ ହୋଇପଡ଼େ । ପରେ ନିଦ୍ରା ଭାଙ୍ଗିଗଲେ ନୂତନ ଚକ୍ଷୁରେ ସବୁ ନୂତନ ଦେଖେ— ଆଶା-ସୁଖରେ ଜୀବନକୁ ପୁଣି ସରସ କରି ଫୁଟାଏ । ଏହି କାରଣରୁ ମହାଶ୍ମଶାନରେ ମହା ନିଦ୍ରାର ଚିତା-ବିନ୍ୟାସ । ସେହି ଚିତାରେ ସ୍ମୃତିର ଜ୍ୱାଳାମାଳା କ୍ଷଣ କାଳ ଚତୁର୍ଦ୍ଦିଗରେ ଚକ୍ର-ଦୀପ୍ତି ଖେଳାଇ ମନୁଷ୍ୟକୁ ପାଗଳ କରିଦିଏ । ସେଇକ୍ଷଣି କିନ୍ତୁ ଭସ୍ମର ଆଚ୍ଛାଦନରେ ସବୁ ଲୀନ ହୋଇଯାଏ । ଶ୍ମଶାନ-ଚିତା ଯେ ବିସ୍ମୃତିର ସିଂହାସନ, ଏହା ଅସ୍ୱୀକାର କରିବ କିଏ ? ଶ୍ମଶାନର ଚିତା-ବହ୍ନି ଭବିଷ୍ୟତର ପଥପ୍ରଦର୍ଶକ । ଚିତା ଅତୀତର ସକଳ ଚିହ୍ନ ଲିଭାଇ ଦିଏ । ଏଣୁ ସ୍ମୃତିର ତପ୍ତ ଅଙ୍ଗାରରେ ଜଳ ସେଚନ କରି ଶୀତଳ କରିବାକୁ ହୋଇଥାଏ ।

ରତ୍ନାକର ପିତାମାତାଙ୍କ କଥା ଚିନ୍ତା କରିବାକୁ ଲାଗିଲେ । ତାଙ୍କ ମନଶ୍ଚକ୍ଷୁ ଆଗରେ ଚ୍ୟବନ ଓ ସୁକନ୍ୟାଙ୍କ ପ୍ରତିମୂର୍ତ୍ତି ଯେପରି ନୃତ୍ୟ କଲା । ସେ ମନେ ମନେ କହିଲେ—" ଆହା ମା ! ତୁମ ଦେହ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଯାଇଛି ! ତୁମର ଏ ମଳିନ ବେଶ, ଏ ଅଶ୍ରୁଧାରା କିଣ ଏ ଅଧମ, କୃତଘ୍ନ ପୁତ୍ର ଲାଗି ମା ? ତୁମର ସରଳ ମଧୁର ସ୍ନେହରେ, ବିଶୁଦ୍ଧ ପ୍ରେମରେ ପଦାଘାତ କରି, ସ୍ୱଧର୍ମରେ ଜଳାଞ୍ଜଳି ଦେଇ ଆସିଛି । ଏ ଅଭାଗା ପୁତ୍ରକୁ ପୁଣି ତୁମ ଶୁଦ୍ଧ ଶୀତଳ କୋଳରେ ସ୍ଥାନ ଦେବ ମା ? ପିତା ! ପିତା ! ଆପଣଙ୍କ ନିକଟରେ ଘୋର ଅପରାଧ କରିଛି— କ୍ଷମା କରନ୍ତୁ । ଆପଣଙ୍କ ସାଧୁ ଉପଦେଶ ପ୍ରତି କର୍ଣ୍ଣପାତ ନ କରି ଚାଲି ଆସିଛି । ଉଦାର ଗୁଣରେ ପାଷଣ୍ଡ ନାରକୀ ପୁତ୍ରକୁ ପୁନର୍ବାର ଗ୍ରହଣ କରିବ ପିତା ?

"ଉଃ ମୋ ନିଦ ଭାଙ୍ଗିଲା କିଏ ? ମୋ ନିଦ ଭାଙ୍ଗିଲା ବା କାହିଁକି ? ବହୁ ଦିନ ପରେ ମୋର ଏହି ନିଦ୍ରା ଶେଷ ନିଦ୍ରା ହେଲା ନାହିଁ କାହିଁକି ? ତାହାହେଲେ ପ୍ରଧାନ ଯନ୍ତ୍ରଣାଦାତା ସ୍ମୃତି ମୋତେ ଆଉ ଯନ୍ତ୍ରଣା ଦେବାକୁ ଆସି ପାରନ୍ତା ନାହିଁ— ମୋତେ ପୁଣି ଅନୁତାପର ତପ୍ତ ତୈଳରେ ପକାଇ ପାରନ୍ତା ନାହିଁ । କି ଭୟଙ୍କର ଯନ୍ତ୍ରଣା ! କିପରି ଏ ସ୍ମୃତିର ହାତରୁ ନିସ୍ତାର ପାଇବି ? ଆଜିଯାଏଁ ଯେଉଁ ସବୁ ଅମାନୁଷିକ ବ୍ୟାପାର, ଉତ୍କଟ ପାପ କରିଛି, ତାହା ପାସୋରି ପାରିବି କିପରି ? ମୁଁ ମୋର ସବୁ ଦେବାକୁ ପ୍ରସ୍ତୁତ—ମୋର ଇହକାଳ, ପରକାଳ ଏପରି କି ମୋ ଅସ୍ତିତ୍ୱ, ଆତ୍ମା ବି ଦେବାକୁ ପ୍ରସ୍ତୁତ— ଯଦି ତାହାର ବିନିମୟରେ ମୁଁ ଗୋଟାଏ ଜିନିଷ ପାଏଁ— ବିସ୍ମରଣ । କୃତ ପାପର ସ୍ମୃତି-ଦଂଶନ ଆଉ ସହ୍ୟ ହେଉ ନାହିଁ । ମୋର କଠିନ ପ୍ରାଣ ଯେ ତା ଆଘାତରେ ଏକାବେଳକେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଉଛି । ଉଃ କି ଭୟାନକ ପାପ ! କି ଭୀଷଣ ନିଷ୍ଠୁରତା ! ସ୍ମୃତି ! ମୋତେ ତୋ ବହ୍ନିରେ ପୋଡି ପକାଅ, ନ ହେଲେ ମୋ ପାଖରୁ ଚିରକାଳ ପାଇଁ ଚାଲିଯାଅ ।"

କିଛି କ୍ଷଣ ସେ ଚିନ୍ତାରୁ ବିରତ ହୋଇ ଶୂନ୍ୟ ମନରେ ଶୂନ୍ୟ ପ୍ରାଣରେ ଊର୍ଦ୍ଧ୍ୱକୁ ଅନାଇଁ ବସିଲେ । ସେତେବେଳେ କେଉଁ ଅଜଣା ଅଚିହ୍ନା ରାଜ୍ୟରୁ ବହି ଆସି ଅରଣ୍ୟର ସମୀର-ତରଙ୍ଗ ତାଙ୍କ କାନରେ ଯେପରି କହିଗଲା— "ସ୍ୱଧର୍ମ ରକ୍ଷା କରିବା ଅତି କଠିନ । ଧର୍ମ-ମାର୍ଗରେ ବିବିଧ ବାଧା ବିଘ୍ନ । ଧର୍ମ-ପଥରେ ବିଚରଣ କରିବାକୁ ଆରମ୍ଭ କଲେ ଚରଣ ପ୍ରଥମତଃ ପ୍ରଲୋଭନ-କଣ୍ଟକରେ କ୍ଷତବିକ୍ଷତ ହୋଇ ଯାଏ । ଏହି କଣ୍ଟକ-ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ କ୍ଷମ ଯେ, ପ୍ରକୃତ ସାଧୁ ସେ । ଯାହା କରିବାର କରି ସାରିଛ, ବର୍ତ୍ତମାନ ଅନୁତାପ କର

ଫଳ ବା କଣ ? ପାପର ପ୍ରାୟଶ୍ଚିତ୍ତ ପୁଣ୍ୟକର୍ମ — ଅନୁତାପ ନୁହେ । ଅଗ୍ନିରେ ହାତ ଦେଇ ହାତ ପୋଡ଼ି ଯାଉଛି, ହାତରେ ପୋଡ଼ା ଦାଗ ଲାଗି ଯାଇଛି । ତାହା ବୋଲି କଣ ହାତ ପାଇଁ ସବୁବେଳେ କାନ୍ଦିବ ?"

ରତ୍ନାକର ପୁଣି ଭାବିଲେ—"ଆଉ ଅଧିକ ଦିନ ମୋର ବିଷ-ନିଶ୍ୱାସରେ ବିଶ୍ୱ ଜଗତର ବାୟୁମଣ୍ଡଳ କଳୁଷିତ କରିବି ନାହିଁ । ଏ ପାପ ଦେହ ବହି ପୃଥିବୀର ପାପ-ଭାର ଆଉ ବଢ଼ାଇବି ନାହିଁ । ମୋର ଏ ଜୀବନର କାର୍ଯ୍ୟ ଶେଷ ହୋଇଅଛି । ଶୁଣିଛି, ଭଗବାନଙ୍କ ରାଜ୍ୟରେ ପ୍ରତ୍ୟେକ ପଦାର୍ଥର ପ୍ରୟୋଜନୀୟତା ଅଛି । ଅତ୍ୟୁତ୍କଟ ଗରଳ-ଚୂର୍ଣ୍ଣ ମଧ୍ୟ ସମୟ ସମୟରେ ମନୁଷ୍ୟର ହିତକର ହୋଇଥାଏ । ଦୁର୍ଗମ ବନର ବିଷଲତା ବି କେବେ କେବେ ରୋଗୀର ରୋଗ ଘୁଞ୍ଚାଇ ଦିଏ । ବନ୍ୟ ହିଂସ୍ର ଜନ୍ତୁର ଅସ୍ଥିଗତ ମଜ୍ଜା ମଧ୍ୟ ମାନବର ଉପକାର କରିଥାଏ । ମୋର ଏହି ଘୃଣିତ ଜୀବନର ଦୃଷ୍ଟାନ୍ତ କାହାର କେବେ ଉପକାରରେ ଆସିବ ନାହିଁ ? ପାପାଚରଣର ଅଚିର-ପ୍ରସୂତ ଭୀଷଣ ଫଳଲାଭ କାହାକୁ ଦେଖିଲେ କଣ ସାବଧାନ କରାଇ ଦେବ ନାହିଁ ? ପର ପ୍ରାଣରେ ବେଦନା ଦେଇ ସୁଖାନ୍ୱେଷଣର ଭୟଙ୍କର ପରିଣାମ କାହାକୁ ଦେଖିଲେ କଣ ଅନୁସୃତ ପାପ-ପନ୍ଥାରୁ ବିରତ କରିବ ନାହିଁ ?

"ଆସ ରତ୍ନାକର, ଭୀମ ଭୈରବ ଗର୍ଜ୍ଜନ କରି, ଉତ୍ତାଳ ତରଙ୍ଗ-ମାଳା, ରୁଦ୍ର ମୂର୍ତ୍ତି ଧରି ଆସ — ଏ ପାପୀ ଦସ୍ୟୁ ରତ୍ନାକରକୁ ଭସାଇ ନେଇ ତୁମର ଅତଳସ୍ପର୍ଶ ଗର୍ଭରେ ଲୀନ କରିଦିଅ । ଆସ ହିମାଚଳ, ବିରାଟ ବପୁ ବିସ୍ତାର କରି ମୋ ମସ୍ତକ ଉପରେ ପଡ଼ — ଏ ଶୃଗାଳର ଅପବିତ୍ର ଦେହକୁ ଧୂଳିକଣାରେ ମିଶାଇ ଦିଅ । ଆସ ପ୍ରଭଞ୍ଜନ, ତୁମର

ବିକଟ ବର୍ଣ୍ଣ ପ୍ରସାରିତ କରି ଆସ— ଏ ପିଶାଚ ନରହନ୍ତାକୁ ଉଡ଼ାଇ ନେଇ ଅସ୍ତିତ୍ୱ ଲୋପ କର × × × × ନା, କେହି ମୋର ପ୍ରାର୍ଥନା ରକ୍ଷା କରିବେ ନାହିଁ— ମୋତେ ଏ ନରକ-ଯନ୍ତ୍ରଣାରୁ ଉଦ୍ଧାର କରିବେ ନାହିଁ ।"

କେତେକ ସମୟ ଚିନ୍ତାରୁ କ୍ଳାନ୍ତ ହୋଇ ବସିଲେ । ଦେଖୁ ଦେଖୁ ତାଙ୍କର ଖର ନିଶ୍ୱାସ ନିର୍ଗତ ହେବାକୁ ଲାଗିଲା, ଚକ୍ଷୁ ରକ୍ତବର୍ଣ୍ଣ ଧାରଣ କଲା, ସର୍ବାଙ୍ଗ କମ୍ପିତ ହେଲା । ସେହି ଆକସ୍ମିକ ଅନୁତାପାନଳ ନିର୍ବାପିତ ହୋଇଗଲା, କ୍ଷଣିକ ବୈରାଗ୍ୟ କେଉଁଆଡ଼େ ତିରୋହିତ ହେଲା । ମନରେ ତାଙ୍କର ଦୃଢ଼ପଣ, ଜଘନ୍ୟ ପ୍ରତିଜ୍ଞା ପୁଣି ଜାଗ୍ରତ ହେଲା— ସର୍ବାଙ୍ଗରେ ଅତ୍ୟାଚାର-ଉତ୍ତେଜନାର ଅଦମ୍ୟ ତାଡ଼ିତ-ପ୍ରବାହ ପୁଣି ଖେଳି ଉଠିଲା । ସେ ଭୂଲୁଣ୍ଠିତ ମୁଦ୍ଗର ଧରି କ୍ରୋଧୋଦ୍ଦୀପ୍ତ କେଶରୀ ତୁଲ୍ୟ ଉଠି ଠିଆ ହେଲେ । ସେତେବେଳେ ତାଙ୍କ ମୁଖ ବୀଭତ୍ସ ପୈଶାଚିକ ଆକୃତି ଧରିଥିଲା । ସେଠାରେ କେହି ଥିଲେ ତାହା ଦେଖି ଭୟରେ ଜୀବନ ରଖିପାରନ୍ତା ନାହିଁ ।

ଭାବିଲେ—'ଏ କଣ ମୁଁ ଭାବି ବସିଥିଲି ! ମୁଁ ପାପୀ, ଅତ୍ୟାଚାରୀ ? ଏଣୁ ଆତ୍ମ-ବଳାତ୍କୃ-ପ୍ରୟାସୀ ? ମୁଁ ଅଧର୍ମ କରୁନାହିଁ— କରୁଛି ଧର୍ମ-ପାଳନ । ମୁଁ ଅତ୍ୟାଚାର କରୁନାହିଁ—କରୁଛି ସଦାଚରଣ । ନିଷ୍ପେଷିତ, ପଦଦଳିତ ଅନାର୍ଯ୍ୟ ଜାତିର ଉଦ୍ଧାରସାଧନ କଣ ପାପ, ଅଧର୍ମ ? ଦାମ୍ଭିକ, ଅତ୍ୟାଚାରୀ ଆର୍ଯ୍ୟର ବିନାଶସାଧନ କଣ ଅତ୍ୟାଚାର ? କଦାପି ନୁହେ । ମୁଁ ଯେଉଁ ସାଧୁ ଦୀକ୍ଷାରେ ଦୀକ୍ଷିତ ହୋଇଅଛି ତାହା ମୁହୂର୍ତ୍ତ-ମୁହୂର୍ତ୍ତି ଯାଏ ଅକ୍ଷୁଣ୍ଣ ରହିବ । ମୁଁ ଯେଉଁ ସତ୍କାର୍ଯ୍ୟରେ ବ୍ରତୀ ହୋଇଅଛି ତାହା ମରଣ ପର୍ଯ୍ୟନ୍ତ ନିଷ୍ପନ୍ନ କରିବ । ଯାହାର କଠିନଶ୍ରମଜାତ

ଫଳମୂଳ, ଖାଦ୍ୟ ଶସ୍ୟ ଖାଇ ଆର୍ଯ୍ୟ ପୁଷ୍ଟ, ଜୀବିତ, ଯାହାର ନିଃସ୍ୱାର୍ଥ ପର ସେବାରେ ଆର୍ଯ୍ୟ ସମ୍ମାନିତ, ସେହି ପରୋପକାରୀ ଅନାର୍ଯ୍ୟର ଶୋଣିତ ମୁହୁର୍ମୁହୁ ଶୋଷଣ କରୁଛି ଆର୍ଯ୍ୟ— ସେହି ଉଦାର ଅନାର୍ଯ୍ୟର ହୃତ୍ପିଣ୍ଡ ତୀବ୍ର ତାଡ଼ନାରେ ଖଣ୍ଡ ଖଣ୍ଡ କରୁଛି ଆର୍ଯ୍ୟ ! ଗର୍ବାନ୍ଧ କୃତଘ୍ନ ଆର୍ଯ୍ୟ ! ଅନାର୍ଯ୍ୟ-ମଙ୍ଗଳପ୍ରୟାସୀ ରତ୍ନାକରର ହାତରୁ ତୋର ଆଉ ନିସ୍ତାର ନାହିଁ ।"

ରତ୍ନାକର ରାଜପୁରୁଷର ଶବକୁ ଅନାଇଁ ବିକଟ ହାସ୍ୟ କଲେ । ପରେ ଆଘାତପ୍ରାପ୍ତ ଅଶ୍ୱ ନିକଟକୁ ଯିବାକୁ ଉଦ୍ୟତ ହୋଇଛନ୍ତି, ଏପରି ସମୟରେ ଜଣେ ଭିଲ ଧାଇଁ ଆସି ତାଙ୍କୁ ସମ୍ବାଦ ଦେଲା ଯେ, କେତେ ଜଣ ବଣିକ ବନରେ ପଥିକ ହୋଇଛନ୍ତି । ସର୍ଦ୍ଦାରଙ୍କ ଇଙ୍ଗିତରେ ଅନୁଚର ମୃତ ବ୍ୟକ୍ତିର ପରିଚ୍ଛଦ, ଅଳଙ୍କାର, ଖଡ୍ଗ ଇତ୍ୟାଦି ତଳୁ ଉଠାଇଲା, ଅଶ୍ୱକୁ ସଙ୍ଗେ ଧରି ପଲ୍ଲୀକୁ ଫେରିଲା । ରତ୍ନାକର ସେହିକ୍ଷଣି ପଲ୍ଲୀକୁ ଯାଇ କେତେ ଜଣ ସେବକଙ୍କ ସଙ୍ଗେ ବଣିକମାନେ ବିଶ୍ରାମ ନେବା ସ୍ଥାନରେ ଯାଇ ପହଞ୍ଚିଲେ । ଦେଖିଲେ, ପଥଶ୍ରମରେ କ୍ଳାନ୍ତ ହୋଇ ଦଶଜଣ ବଣିକ ଗୋଟିଏ ଶାଳ ବୃକ୍ଷ ଛାୟାରେ ଶାୟିତ । ହତ-ଭାଗ୍ୟ ବାଟୋଇମାନଙ୍କୁ ଆଉ ଅଧିକ ସମୟ ବିଶ୍ରାମ ନେବାକୁ ହେଲା ନାହିଁ । ସେମାନଙ୍କର ଚିର-ବିଶ୍ରାମ-ଗ୍ରହଣର ସମୟ ଆସି ପହଞ୍ଚିଗଲା । ରତ୍ନାକର ଓ ତାଙ୍କର ଅନୁଚରଗଣ ବଣିକଦଳକୁ ନିଷ୍ଠୁର ଭାବରେ ହତ୍ୟାକରି, ସେମାନଙ୍କ ନିକଟରେ ଥିବା ସକଳ ପଦାର୍ଥ ଲୁଟି କରି ନେଲେ ।



୧୬

ରତ୍ନାକରଙ୍କ ପ୍ରଭାବରେ ହଟଗୋଳ କମ୍ପିତ, ରାଜା ଅଙ୍ଗଧ୍ୱଜ ଏବଂ ତାଙ୍କ କର୍ମଚାରୀମାନେ ବ୍ୟତିବ୍ୟସ୍ତ । ସମସ୍ତେ ଚୋରଟିକୁ ଧରିବା ପାଇଁ ଉଦ୍‌ଗ୍ରୀବ । ଅଙ୍ଗଧ୍ୱଜ ରାଜ୍ୟ ମଧ୍ୟରେ ଘୋଷଣା କଲେ— ଯେ ଚୋର ରତ୍ନାକରକୁ ଜୀବିତ ବା ମୃତ ଅବସ୍ଥାରେ ଧରି ଆଣିବ, ତାହାକୁ ପାଞ୍ଚ ଶତ ସ୍ୱର୍ଣ୍ଣ ମୁଦ୍ରା, ବହୁ ଧନ ରତ୍ନ ପୁରସ୍କାର ଦିଆଯିବ ଏବଂ ରାଜକର୍ମଚାରୀଙ୍କ ମଧ୍ୟରେ କେହି ରତ୍ନାକରକୁ ଧରିବାରେ କୃତକାର୍ଯ୍ୟ ହେଲେ ତାହାକୁ ସେହି ପୁରସ୍କାର ବ୍ୟତୀତ ରାଜ୍ୟର ପାଞ୍ଚ ଖଣ୍ଡ ଗ୍ରାମ ଦିଆଯିବ, ତାହାର ପଦୋନ୍ନତି ଓ ବେତନବୃଦ୍ଧି କରାଯିବ । ଏପରି ପ୍ରଲୋଭନର ମାୟା ତ୍ୟାଗ କରିବା ସମସ୍ତଙ୍କ ପକ୍ଷରେ ସହଜସାଧ୍ୟ ବ୍ୟାପାର ନୁହେଁ । ରାଜ୍ୟର ପ୍ରଧାନ ସେନାପତି ବୀରବର ଚୋରକୁ ଧରିବାକୁ ଚେଷ୍ଟା କରିବେ ବୋଲି ରାଜାଙ୍କୁ ଜଣାଇଲେ । ରାଜା ପ୍ରୀତ ହୋଇ ତାଙ୍କୁ ସେହି କାର୍ଯ୍ୟ କରିବାକୁ ହୁକୁମ ଦେଲେ ।

ଅନେକ ଭିଲ ରାଜାଙ୍କର ସୈନିକ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ଜଣଙ୍କ ବିବେଚନାରେ, ରତ୍ନାକର 'ଚୋର' ଆଖ୍ୟା ପାଇଥିଲେ ମଧ୍ୟ ପରୋପକାରୀ ବ୍ୟକ୍ତି, ଅନାର୍ଯ୍ୟହିତୈଷୀ ବୀର । ଏଣୁ ସେମାନେ ରାଜାଙ୍କ ଅଧୀନ ହେଲେହେଁ, ରତ୍ନାକରଙ୍କୁ ଯଥେଷ୍ଟ ଶ୍ରଦ୍ଧା, ସମ୍ମାନ କରୁଥିଲେ । ସେମାନେ ରାଜା ଓ ରାଜକର୍ମଚାରୀମାନଙ୍କର ଗୁପ୍ତ ମନ୍ତ୍ରଣା ବିଶେଷ ଭାବରେ ରତ୍ନାକରଙ୍କୁ ଜଣାଇ ସମୟୋଚିତ ସାହାଯ୍ୟ କରୁଥିଲେ । ଆଉ କେତେ ଜଣ ଭିଲ ସୈନିକ ଧନ ଲୋଭରେ, ପୁରସ୍କାର ପ୍ରଲୋଭନରେ ରତ୍ନାକରଙ୍କର ଗତିବିଧି ଲକ୍ଷ୍ୟ କରୁଥାନ୍ତି ଗୁପ୍ତଭାବରେ । ସେହି ସ୍ୱଜାତିଦ୍ରୋହୀ, ବିଶ୍ୱାସଘାତକ ଭିଲ ସୈନିକମାନେ ରତ୍ନାକରଙ୍କ

ପ୍ରତି ମିଥ୍ୟା ଭକ୍ତି ସମ୍ମାନ, କୃତ୍ରିମ ଭକ୍ତି ଶ୍ରଦ୍ଧା ଦେଖାଇ, ତାଙ୍କୁ ରାଜା ଓ ରାଜକର୍ମଚାରୀଗଣଙ୍କ ବିରୋଧରେ ଏଣୁତେଣୁ ଲଗାଇ କହି, ତାଙ୍କର ଗୁପ୍ତ କଥା ସବୁ ରାଜାଙ୍କୁ ଜଣାଉଥିଲେ । ନିଜ ଭାଇ ବା ବନ୍ଧୁ ପ୍ରତି, ସ୍ୱ-ଜାତିର ସ୍ୱଦେଶର ଲୋକ ପ୍ରତି ବିଦ୍ୱେଷ କରି,ତାହା ବିପକ୍ଷରେ ବିଜାତୀୟ ବା ବିଦେଶାଗତ ବ୍ୟକ୍ତିର ସାହାଯ୍ୟ ଲୋଡ଼ି ସ୍ୱଦେଶର ସ୍ୱଜାତିର ସର୍ବ-ନାଶ କରିବା ଅଭ୍ୟାସ ଭାରତରେ ବରାବର ଥିଲା ଓ ଅଛି ।

ସେହି ରାଜ୍ୟର କେବଳ ଭୀଲ ନୁହନ୍ତି, ଅନ୍ୟାନ୍ୟ ପାର୍ବତୀୟ ଜାତିର ଲୋକେ ମଧ୍ୟ ରତ୍ନାକରଙ୍କର ଅତ୍ୟନ୍ତ ବଶବର୍ତ୍ତୀ ଥିଲେ । ସେ ଅନୁବର୍ତ୍ତୀ ଅନାର୍ଯ୍ୟଗଣଙ୍କ ନିକଟରେ ଖୁବ୍ ସରଳ —ଯେ କୌଣସି ଅନାର୍ଯ୍ୟଙ୍କୁ ସେ ସହଜରେ ବିଶ୍ୱାସ କରି ଦେଉଥିଲେ । ରାଜାଙ୍କ ଘୋଷଣାରେ ଅଶାନ୍ୱିତ ହୋଇ ବୀରବର ରତ୍ନାକରଙ୍କୁ ଧରିବା ପାଇଁ ଅଗ୍ରସର ହେଲେ ମଧ୍ୟ, ଅନ୍ୟ କେତେକ ଜଣ ରାଜକର୍ମଚାରୀ ବ୍ୟକ୍ତିଗତ ଚେଷ୍ଟାରେ ଚୋର ଧରିବାକୁ ମନ ବଳାଇଲେ । ତେବେ ନିଜର ଇଚ୍ଛା କେହି କାହାକୁ ଜଣାଇଲା ନାହିଁ । ପ୍ରଲୋଭନ ଏଡ଼ିବା କଠିନ ! ଏପରି ଇଚ୍ଛା କରିବା କର୍ମଚାରୀଙ୍କ ମଧ୍ୟରେ ପ୍ରଧାନ ଥିଲେ ସହକାରୀ ସେନାପତି ମଦନ, ଆଉ ତିନି ଜଣ ଗୁପ୍ତଚର ଭୀଲ ସୈନିକ ।

ଘୋଷଣାର ପରବର୍ତ୍ତୀ ଦିନ ମଧ୍ୟାହ୍ନରେ ପ୍ରଧାନ ସେନାପତି ବୀର-ବର, ଅଗରୁ ଯାଇ ରତ୍ନାକରଙ୍କର ଗତି ବିଧି ଲକ୍ଷ୍ୟ କରି ସମ୍ବାଦ ପଠାଇବା ପାଇଁ ତାଙ୍କ ସହକାରୀ ମଦନଙ୍କୁ ଆଦେଶ କଲେ । ମଦନ ଅଳ୍ପ କେତେକ ଜଣ ସୈନିକ ସହିତ ବନରେ ପ୍ରବେଶ କଲେ । ମଦନଙ୍କ ଠାରୁ ସମ୍ବାଦ ପାଇବା ପରେ ସନ୍ଧ୍ୟାବେଳେ ରାଜେ ସଦଳବଳ ଅରଣ୍ୟକୁ ଯିବାକୁ ବୀରବର ପ୍ରସ୍ତୁତ ହୋଇ ରହିଲେ । ରତ୍ନାକରଙ୍କର

ଅନୁଚରମାନେ ବୃକ୍ଷଶାଖାରେ ବସି ଦୂରରୁ ମଦନଙ୍କର ଦଳ ଦେଖି ସର୍ଦ୍ଦାରଙ୍କୁ ଜଣାଇଲେ । ରତ୍ନାକର ସେମାନଙ୍କୁ ଅଭୟ ଦେଇ, ସେତେବେଳେ ଯାହା ଯାହା କରିବା ଆବଶ୍ୟକ ତାହା ସେମାନଙ୍କୁ, ପ୍ରଧାନତଃ ଗୁପ୍ତଚରଦଳକୁ ବୁଝାଇ ନିଜେ ପଲ୍ଲୀ ତ୍ୟାଗ କରି ଅରଣ୍ୟ ମଧ୍ୟରେ ପ୍ରବିଷ୍ଟ ହେଲେ । ସେହି ବନରେ ଭିଲସନ୍ଧାନ ପାଇବା ଶତ୍ରୁପକ୍ଷରେ ଦୁରୂହ ବ୍ୟାପାର । ଅରଣ୍ୟଟି ଅତି ଗଭୀର, ଗମ୍ଭୀର, ଅସଂଖ୍ୟ ଆକାଶସ୍ପର୍ଶୀ ଶାଳ ତମାଳ ଦ୍ୱାରା ଘନ ଘୋର ସଂବଦ୍ଧ । ଅନେକ ସ୍ଥାନରେ ପଥ ପାଇବା ଦୁଷ୍କର । ଘନପଲ୍ଲବଯୁକ୍ତ ବୃକ୍ଷଶାଖା ଅତି ନିବିଡ଼ ରୂପେ ପରସ୍ପର ସଂଯୁକ୍ତ । ସୁତରାଂ ତହିଁ ମଧ୍ୟରେ ଦୃଷ୍ଟି ଚାଳନ ହେବା କଠିନ । ସେପରି ବିରାଟ ବନ ସମଗ୍ର ଭାରତର ଅନ୍ୟ କୌଣସି ସ୍ଥାନରେ ଥିଲା କି ନା ସନ୍ଦେହ ।

ମଦନ ସଦଳବଳ ଯାଇ ରତ୍ନାକରଙ୍କର ପଲ୍ଲୀ ଘେରି ରହିଲେ । ତାଙ୍କ ସୈନ୍ୟ ମଧ୍ୟରେ ଜଣେ ଭିଲ ରତ୍ନାକରଙ୍କର ଖୁବ୍ ବିଶ୍ୱସ୍ତ—ତାହା ଉପରେ ମଦନଙ୍କର ଭାରି ବିଶ୍ୱାସ । ମଦନ ସେହି ସୈନିକ ହାତରେ ବୀରବରଙ୍କ ନିକଟକୁ ଖଣ୍ଡିଏ ପତ୍ର ଲେଖି ପଠାଇଲେ । ପତ୍ରବାହକ ରାଜଧାନୀ ଆଡ଼କୁ ଅଗ୍ରସର ନ ହୋଇ ରତ୍ନାକରଙ୍କର ଜଣେ ଗୁପ୍ତଚର ସାହାଯ୍ୟରେ ତାଙ୍କ ନିକଟକୁ ଯାଇ ତାଙ୍କୁ ପତ୍ରଟି ଦେଖାଇଲା । ରତ୍ନାକର ପତ୍ର ପାଠ କଲେ ଏବଂ ପତ୍ରବାହକ ମୁଖରୁ ଶୁଣିପାରିଲେ ଯେ, ବୀରବରଙ୍କ ନିକଟରୁ ଏ ପତ୍ରର ଉତ୍ତର ଆସିବାରେ ବିଳମ୍ବ ହେଲେ ମଦନ ଜଣେ ଅଶ୍ୱାରୋହୀ ସୈନିକ ପୁରୁଷ ହସ୍ତରେ ଦ୍ୱିତୀୟ ପତ୍ର ପ୍ରେରଣ କରିବେ । ପ୍ରଥମ ପତ୍ରଟି ବୀରବରଙ୍କୁ କେତେବେଳେ ଖବର ଦେବାକୁ ହେବ, ରତ୍ନାକର ସେ କଥା ଭିଲ ସୈନିକକୁ ବୁଝାଇ ବିଦାୟ କଲେ ।

ବୀରବରଙ୍କ ଠାରୁ ପ୍ରଥମ ପତ୍ରର ପ୍ରତ୍ୟୁତ୍ତର ଆସିବାରେ ସତକୁ ସତ, ଦୁଇ ଘଣ୍ଟା ବିଳମ୍ବ ହୋଇଗଲା । ସେତେବେଳକୁ ଅରଣ୍ୟଭାଗ କ୍ରମଶଃ ଅନ୍ଧକାରାବୃତ ହୋଇ ଆସୁଥିଲା । ମଦନଙ୍କର ବିଶ୍ୱସ୍ତ ପତ୍ରବାହକ ଅଶ୍ୱାରୋହଣ କରି ତାଙ୍କ ଶିବିର ମଧ୍ୟରୁ ବହିର୍ଗତ ହେଲା । ସେ ଖୁବ୍ ଦୂର ନୁହେ । ବନ ମଧ୍ୟରେ ଯିବାବେଳେ ରତ୍ନାକର ପଥ ପାର୍ଶ୍ୱରେ ଲୁଚି ରହି ତାହାକୁ ଶରବିଦ୍ଧ କରି ଦେଲେ । ସୈନିକ ଭୂତଳଶାୟୀ ହୋଇ ପ୍ରାଣ ହରାଇଲା । ରତ୍ନାକର ସୈନିକର ମୃତ ଶରୀରରୁ ବସ୍ତ୍ର, ଅସ୍ତ୍ରଶସ୍ତ୍ରାଦି ବାହାର କଲେ । ମଦନଙ୍କର ବିଶ୍ୱସ୍ତ ପତ୍ରଟି ପାଠ କଲେ । ପରେ ତାଙ୍କର ଜଣେ ଗୁପ୍ତଚରକୁ ମୃତ ସୈନିକର ବେଶଭୂଷାରେ ସଜ୍ଜିତ କଲେ ଏବଂ ଯାହା ଯାହା କରିବାକୁ ହେବ ସବୁ କହି ତା' ହାତରେ ସେହି ପତ୍ରଟି ଦେଇ ବୀରବରଙ୍କ ନିକଟକୁ ପ୍ରେରଣ କଲେ ।

ସନ୍ଧ୍ୟା ହୋଇଗଲା, ଅଥଚ ବୀରବର ସହକାରୀଙ୍କ ନିକଟରୁ କୌଣସି ସମ୍ବାଦ ନ ପାଇ ଚିନ୍ତିତ ହୋଇ ଗୃହରେ ନିଜ ସ୍ତ୍ରୀ ସଙ୍ଗେ କଥାବାର୍ତ୍ତା କରୁଛନ୍ତି, ଏହି ସମୟରେ ଜଣେ ବୃଦ୍ଧା ଖୁବ୍ ସ୍ତ୍ରୀ କାନ୍ଦି କାନ୍ଦି ତାଙ୍କ ଗୃହରେ ପହଞ୍ଚିଲା । କହିଲା—'ମୁଁ ଖୁବ୍ ସ୍ତ୍ରୀ । ମୋର ଏକମାତ୍ର କନ୍ୟା ଅଛି ବିବାହ କରି ନାହିଁ । ତା' ଉପରେ କେତେ ଦିନ ହେଲା ରତନ ଶ୍ରେଷ୍ଠୀର ନଜର ପଡ଼ିଛି । ତା'କୁ ବିବାହ କରିବାକୁ ସେ ହଠି ବସିଛି । ଦିନେ ମୋତେ କହିଲା—ଝିଅକୁ ଦେଲେ ମୋତେ ସେ ବହୁ ଧନ ରତ୍ନ ଦେବ, ନ ଦେଲେ ମୋତେ ହତ୍ୟା କରିବ । ମୁଁ ଶୁଣିଲି ନାହିଁ । ସକଳ ପ୍ରକାର ପ୍ରଲୋଭନ, ଭୟ ପ୍ରଦର୍ଶନ ବିଫଳ ହେବାରୁ ରତନ ଷଡ଼ଯନ୍ତ୍ରକଲେ ମୋ ଘରେ ପଶି ମୋ ଝିଅକୁ ବୋହି ନେଇଗଲା । ଏପରି ଭୟଙ୍କର ଅତ୍ୟାଚାର ଆଉ ସହି ହେଉ ନାହିଁ । ତୁମେ ଏହାର ପ୍ରତିବିଧାନ ନ କଲେ ମୁଁ ତୁମ ଆଗରେ ଆତ୍ମହତ୍ୟା କରିବ ।'

ବୀରବର ଓ ତାଙ୍କ ପତ୍ନୀ ବନ୍ଦିତ ! ତାଙ୍କ ଭଳ ପ୍ରତାପଶାଳୀ ସେନାପତି ଥାଉ ଥାଉ ଅରଣ୍ୟ-ମୂଷିକ ଭିଲ ତସ୍କରର ଅତ୍ୟାଚାର ଦନକୁ ଦନ ବୃଦ୍ଧି ପାଉଥିବାର ଦେଖି ବୀରବର ଲଜ୍ଜିତ ହେଲେ । ସେ ଅରକ୍ତ ଚକ୍ଷୁରେ ବୀରକେଶ ସ୍ପର୍ଶ କରି କହିଲେ—'ମୋର ଦୃଢ ପ୍ରତିଜ୍ଞା, ଯେ କୌଣସି ଉପାୟରେ ରତ୍ନାକରର ସଜୀବ ବା ନିର୍ଜୀବ ଦେହ ଧରି ଆଣିବ । ଏ କାର୍ଯ୍ୟରେ ପ୍ରାଣ ଯାଉ କ୍ଷତି ନାହିଁ । ଯଦି ପ୍ରତିଜ୍ଞା ରକ୍ଷା କରି ନ ପାରେଁ, ତାହାହେଲେ 'ସେନାପତି'ପଦ ତ୍ୟାଗ କରିବ ।' ସେହିକ୍ଷଣି ସେ ସୈନିକମାନଙ୍କୁ ଅପଣାର ଦାରୁଣ ପ୍ରତିଜ୍ଞା କହି ପଠାଇଲେ । ଭିଲ ସୈନ୍ୟଗଣ ବଚଳତ ହୋଇ ଉଠିଲେ । ବୀରବର ବୃଦ୍ଧାକୁ ପଚାରିଲେ—'ତୁ ରତ୍ନାକୁ କେତେଦନ ହେଲା ଜାଣୁ ?"

ବୃଦ୍ଧା:—ବହୁ ଦନ ହେଲା । ସେ ମୋ ଉପରେ ବରାବର ଅତ୍ୟାଚାର କରି ଅସୁଛି । ମୋ ଗୋରୁ, ଛେଳ, ମେଣ୍ଢା କାଟି ଖାଇଛି । ବଡ ବଦମାଶ୍ ସେ ।

ବୀରବର—ସହକାରୀ ସେନାପତିଙ୍କି ପଠାଇଛି । ଗ୍ରେରର ସନ୍ଧାନ ପାଇବା କ୍ଷଣି ତୋ କନ୍ୟାକୁ ଉଦ୍ଧାର କରି ତାହାକୁ ଧରି ଆଣିବ । ଭୟ କର ନା ।

ବୃଦ୍ଧା:—ତାହାର ସନ୍ଧାନ ମୁଁ କହି ପାରିବ । ମୁଁ ତୁମ ସଙ୍ଗେ ଯାଇ ରାତିରେ ହାତେ ହାତେ ଧରାଇ ଦେବ ।

ବୀରବର—କେବେ ତାକୁ ଦେଖାଇ ଦେବୁ ?

ବୃଦ୍ଧା—ଯେତେବେଳେ ହୁକୁମ କରିବ । ଆଜ ରାତି ଅସ ।

ବୀରବର—ଅମ ସଙ୍ଗେ ସୈନ୍ୟ ସାମନ୍ତ ଯିବେ ତ ?

ବୃଦ୍ଧା—ଅବଶ୍ୟ । ସୈନ୍ୟ ନ ଧରି ଶତ୍ରୁ ପାଖକୁ ଯିବା ଭଲ ନୁହେ ।

ବୀରବର ଆଶ୍ୱସ୍ତ ହେଲେ ଏବଂ ପତ୍ନୀଙ୍କି ଲକ୍ଷ୍ୟ କରି କହିଲେ—'ବୋଧହୁଏ ବୃଦ୍ଧାର କଥା ବିଶ୍ୱାସଯୋଗ୍ୟ ।' ବୀରବରଙ୍କ ସ୍ତ୍ରୀ ଉତ୍ତର କଲେ, 'ମୁଁ ଅବିଶ୍ୱାସର କୌଣସି କାରଣ ଦେଖୁ ନାହିଁ । ବିଶେଷତଃ ସ୍ତ୍ରୀ ସହଜରେ ଠକାମି କରି ନ ପାରେ ।'

ସେନାପତିଙ୍କ ମନ ମାନିଗଲା । ସେତେବେଳେ ଜଣେ ଭିଲ ସୈନିକ ଆସି ସେନାପତିଙ୍କୁ ପ୍ରଣାମ କରି ଖଣ୍ଡିଏ ପତ୍ର ଦେଲା । ସେ ଉଦ୍‌ବେଗଜଡ଼ିତ ସ୍ୱରରେ ପତ୍ର ପାଠ କରି ପତ୍ନୀଙ୍କୁ ଶୁଣାଇଲେ । ପତ୍ରରେ ଲେଖା ଥିଲା:—

"ଇତନର ପକ୍ଷୀକୁ ମୁଁ ହୈନ୍ୟ ଦ୍ୱାରା ଘେରି ରହିଛି । ପତ୍ରବାହକ ଖୁବ୍ ବିଶ୍ୱସ୍ତ । ତାହାର ବିଶେଷ ଚେଷ୍ଟାରେ ମାଛ ଆଜି ଜାଲରେ ପଡ଼ିଛି । ସେ ଆପଣଙ୍କୁ ସ୍ଥାନଟି ଦେଖାଇ ଦେବ । ଆପଣ ଯେତେ ଶୀଘ୍ର ପାରନ୍ତି ସୈନ୍ୟ ଧରି ଆସନ୍ତୁ—ବିଳମ୍ବ କରିବେ ନାହିଁ ।

ଆପଣଙ୍କର ବିଶ୍ୱସ୍ତ
ମଦନ ।"

ବୀରବର ଓ ତାଙ୍କ ପତ୍ନୀଙ୍କର ଆଉ ବୃଦ୍ଧାର ମୁଖ ହାସ୍ୟମୟ ହୋଇ ଉଠିଲା । ସେନାପତି ଓ ତାଙ୍କ ସ୍ତ୍ରୀ ଭାରି ଆହ୍ଲାଦିତ ହେଲେ ଯେ, ଏଥର ନିଶ୍ଚୟ ସେମାନଙ୍କର ଭାଗ୍ୟଚକ୍ର ପରିବର୍ତ୍ତିତ ହେବ । ପାଞ୍ଚ ଖଣ୍ଡ ଗ୍ରାମ ଲାଭ, ପାଞ୍ଚ ଶତ ସ୍ୱର୍ଣ୍ଣ ମୁଦ୍ରା ପ୍ରାପ୍ତି, ବେତନ ବୃଦ୍ଧି, ପଦୋନ୍ନତି— ଏ କଣ କମ୍ ସୌଭାଗ୍ୟର ବିଷୟ ! ଆଶାର ହିଲ୍ଲୋଳରେ, ସୁଖ କଳ୍ପନାର ତାଣ୍ଡବରେ ପତି ପତ୍ନୀଙ୍କର ମନ ଉତ୍‌ଫୁଲ୍ଲ ହୋଇ ଉଠିଲା । ଠିକ୍

ସେତିକିବେଳେ ଆଉ ଜଣେ ସୈନିକ ମଦନଙ୍କର ଦ୍ୱିତୀୟ ପତ୍ର ଧରି ଉପସ୍ଥିତ ହେଲା । ବୀରବର ତାହା ପାଠ କଲେ:—

## ଜରୁରୀ

"ଆଜି ରତନ କେଉଁଠାରୁ ଜଣେ ଯୁବତୀକୁ ହରଣ କରି ଆଣିଛି । ଯୁବତୀର କାତର ବିଳାପଧ୍ୱନିରେ ପକ୍ଷୀ କମ୍ପିତ । ବୋଧହୁଏ ତସ୍କର ତାହାକୁ ବିବାହ କରିବ । କ୍ଷଣମାତ୍ର ବିଳମ୍ବ ନ କରି ବନ୍ଧୁ ସୈନ୍ୟ ଧରି ପତ୍ରବାହକର ନିର୍ଦ୍ଦେଶିତ ମାର୍ଗରେ ଆସନ୍ତୁ । ଏ ପଲ୍ଲୀ ଠାରୁ କିଛି ଦୂରରେ କେତେକ ସୈନ୍ୟ ରଖି ଆସିବେ । ଆସିବାରେ ବିଳମ୍ବ କଲେ ଆମ ଶ୍ରମ ପଣ୍ଡ ହୋଇଯିବ । ମୁଁ ରତନକୁ ସତର୍କତା ସହ ସେଠା ରହିଛି — ତାହାର ପଳାଇବାର ସମ୍ଭାବନା ଅତି ଅଳ୍ପ ।"

ଏଥର ଆଉ ସନ୍ଦେହ ନାହିଁ । ବୀରବରଙ୍କ ମନରେ ଧ୍ରୁବ ବିଶ୍ୱାସ ଜାତ ହେଲା । ତାଙ୍କର ଭାଗ୍ୟ-ନକ୍ଷତ୍ର ସମୁଜ୍ଜ୍ୱଳ ଆଲୋକବିକିରଣ ଆରମ୍ଭ କରିଅଛି । ପ୍ରଧାନ ସେନାପତି ଅସ୍ତ୍ରଶସ୍ତ୍ରସଜ୍ଜିତ ସୈନ୍ୟ, ଦୁଇଜଣ ପତ୍ରବାହକ ଓ ବୃଦ୍ଧା ସଙ୍ଗେ ରାତ୍ରି ପ୍ରାୟ ଦୁଇ ପ୍ରହର ସମୟରେ ନଗର ତ୍ୟାଗ କଲେ । କିଛି ସମୟ ପରେ ଅରଣ୍ୟର ପ୍ରାନ୍ତ ଭାଗରେ ଯାଇ ଉପନୀତ ହେଲେ । ପ୍ରଥମ ପତ୍ରବାହକ ଭିଲ ସୈନିକ ଅରଣ୍ୟ ପଥରେ ଅତ୍ୟନ୍ତ ଅଭ୍ୟସ୍ତ ଥିବାରୁ ବୀରବର ତାହାର ପ୍ରଦର୍ଶିତ ପଥରେ ଯିବା ଶ୍ରେୟସ୍କର ମନେ କଲେ । ସେ ପଥପ୍ରଦର୍ଶକ ହେଲା । ସୈନିକମାନେ କେତୋଟି ମଶାଲ ଜଳାଇ ଚାଲିଲେ ।

ପୂର୍ବେ କହାଯାଇଅଛି, ଅରଣ୍ୟଟି ଅତି ବିସ୍ତୃତ, ଘନ ଗମ୍ଭୀର । ଅସଂଖ୍ୟ ଉଚ୍ଚ ଉଚ୍ଚ ବୃହଦାକାର ଶାଳ ତମାଳ ବୃକ୍ଷ ପରସ୍ପର ଶାଖାସମ୍ବଦ୍ଧ

ହୋଇ ଦୁର୍ଭେଦ୍ୟ ଦୁର୍ଗ-ପ୍ରାକାର ସଦୃଶ ସମସ୍ତ ବନଦେଶ ବେଷ୍ଟନ କରି ରହିଅଛି । ରାତ୍ରିବେଳେ ଏ ଅରଣ୍ୟରେ ପ୍ରବେଶ କରିବା ଯେ ଜୀବନ-ମରଣାତ୍ମକ ବ୍ୟାପାର, ବୀରବର ଏହା ଉତ୍ତମ ରୂପେ ବୁଝିଥିଲେ । ସେ ଆତ୍ମରକ୍ଷାର ସୁନ୍ଦର ଉପାୟ ଅବଲମ୍ବନ କଲେ । ପ୍ରଥମରେ ପ୍ରଥମ ପଥ-ବାହକ ଭୀଲ, ତତ୍ପରେ ଦ୍ୱିତୀୟ ପଥବାହକ ସୈନିକ ପୁରୁଷ, ପରେ ବୃଦ୍ଧା—ଏମାନେ ଆଗେ ଆଗେ ମାର୍ଗ ଦେଖାଇ ଚାଲିଲେ । ସେମାନଙ୍କ ପଛରେ ଦୁଇଜଣ ସଶସ୍ତ୍ର ସୈନିକ, ପରେ ଅଶ୍ୱାରୋହୀ ବୀରବର, ତାଙ୍କ ପଶ୍ଚାତରେ ସୈନ୍ୟଦଳ ଅଗ୍ରସର ହେଲେ ।

ଏପରି ପ୍ରାୟ ଦୁଇକୋଶ ବନପଥ ଅତିକ୍ରମ କରିବା ପରେ ପଥ-ପ୍ରଦର୍ଶକମାନେ ସେନାପତିଙ୍କୁ ଗତି ସ୍ଥଗିତ କରିବା ନିମନ୍ତେ ଇଙ୍ଗିତ କଲେ । ସେମାନେ ମଶାଲ ଆଲୋକ ଦ୍ୱାରା ଅଦୂରରେ କେତେକ ଜଣ ସୈନିକଙ୍କୁ ଦେଖାଇ ଦେଲେ । ସେନାପତି ଦେଖିଲେ, ଅଦୂରସ୍ଥିତ ସୈନ୍ୟ ନିଜ ନିଜର ଓଷ୍ଠଦେଶ ଅଙ୍ଗୁଳିରେ ସ୍ପର୍ଶ କରି ଗଣ୍ଡଗୋଳ କରିବାକୁ ନିଷେଧ କରୁଅଛନ୍ତି । ଆଉ ଅଗ୍ରସର ନ ହୋଇ ପ୍ରାତଃକାଳ ପର୍ଯ୍ୟନ୍ତ ସେଠାରେ ଅବସ୍ଥାନ କରିବାକୁ ସେନାପତି ମନ ବଳାଇ ବୃଦ୍ଧାର ପରାମର୍ଶ ଜିଜ୍ଞାସା କଲେ । ବୃଦ୍ଧା କହିଲା ଯେ, ଉତନଗଡ଼ର ପଳାଇବାର ସୁବିଧା ନାହିଁ, ଅତଏବ ସୈନ୍ୟ ସେଠାରେ ସକାଳଯାଏଁ ଅପେକ୍ଷା କଲେ କିଛି କ୍ଷତି ନାହିଁ । ବୀରବର ସେଠାରେ ସୈନ୍ୟ ରଖିଲେ—ପାଞ୍ଚ ଜଣ ବଳିଷ୍ଠ ସୈନିକ, ଦୁଇ ଜଣ ପଥବାହକ ଓ ବୃଦ୍ଧା ଏପରି ଆଠ ଜଣଙ୍କୁ ସଙ୍ଗେ ନେଇ ଅରଣ୍ୟ ମଧ୍ୟରେ ଅଗ୍ରସର ହେବାକୁ ଲାଗିଲେ । କିଛି ଦୂରରେ ଯେଉଁ ନବାବ୍ ସୈନିକମାନେ ଠିଆ ହୋଇ ଇଙ୍ଗିତ ମାତ୍ର କରୁଥିଲେ, ବହ୍ନି ଆଲୋକରେ ସେମାନଙ୍କର ମୁଖାକୃତି ଦେଖି ବୀରବର କିଞ୍ଚିତ୍ ଚମକିତ ହୋଇଗଲେ । ସେମାନେ ଭୀଲ

ମାନଙ୍କ ପରି ଘନକୃଷ୍ଣବର୍ଣ୍ଣ ଦେଖାଯାଉଥିଲେ । ବୃଦ୍ଧ ଅଳ୍ପ ହସି କହିଲେ—"ସେନାପତି ! ଖରା ଓ ପବନରେ ବନ ଗଛ ଏମାନେ ରତ୍ନକୁ ଧରିବା ପାଇଁ ଠିଆ ହୋଇ ରହିଛନ୍ତି । ଏଣୁ ଏମାନେ ଏପରି ଦେଖାଯାଉଛନ୍ତି ।"

ବୀରବର ବୃଦ୍ଧର କୈଫିୟତରେ କିଛି ଆଶ୍ୱସ୍ତ ହୋଇ ଧୀର ପଦ ବିକ୍ଷେପରେ ଆଠ ଜଣ ମାତ୍ର ପଥ-ସଙ୍ଗୀଙ୍କ ସହିତ ଅରଣ୍ୟର ଗମ୍ଭୀରତମ ଭାଗରେ ପ୍ରବିଷ୍ଟ ହେବାକୁ ଲାଗିଲେ । ଯାଉଁ ଯାଉଁ ଭାବିଲେ, "ଦସ୍ୟୁ ରତ୍ନାକର ନିଜ ବୁଦ୍ଧି କୌଶଳରେ ଆମମାନଙ୍କୁ କଡ଼ା ଶିକ୍ଷା ଦେଇଅଛି । ସେ ଏପରି ସ୍ଥାନରେ ନିଜର ଦୁର୍ଗ ନିର୍ମାଣ କରିଛି, ଯେଉଁଠାରେ ଦିବସରେ ମଧ୍ୟ ସୂଚି-ଭେଦ୍ୟ ଅନ୍ଧକାର ରାଜତ୍ୱ କରେ । ଏହି ଅରଣ୍ୟରେ ରତ୍ନର ସମ୍ମୁଖୀନ ହେବା ଆମ ପକ୍ଷରେ ଧୃଷ୍ଟତା ଭିନ୍ନ ଆଉ କିଛି ନୁହେଁ ।"

ବୀରବରଙ୍କୁ ଏପରି ଚିନ୍ତା-ଜାଲରେ ଜଡ଼ିତ ହେବାର ଦେଖି ବୃଦ୍ଧ କହିଲେ— "ସେନାପତି, ତୁମର ଏତେ ସୈନ୍ୟ, ଏତେ ଅର୍ଥ, ଏତେ ଅସ୍ତ୍ର ଶସ୍ତ୍ର ଅଛି—ସାମାନ୍ୟ ଗୋଟିଏ ଭୀଲ ତସ୍କରକୁ ଧରିବାକୁ ଡରୁଛ ! ରତ୍ନ ଦୁର୍ଦାନ୍ତ ହେଲେ ମଧ୍ୟ ଏବେ ମହା ବିପାକରେ ପଡ଼ିଛି । ତାହାକୁ ଧରିବା ଖୁବ୍ ସହଜ ହେବ । ସାହସ ଧରି ଶୀଘ୍ର ଚାଲ ।" ସେନାପତି ଅପ୍ରତିଭ ହେଲେ, ମନେ ମନେ ବୃଦ୍ଧର ତୀକ୍ଷ୍ଣ ବୁଦ୍ଧିର ପ୍ରଶଂସା ନ କରି ରହି ପାରିଲେ ନାହିଁ । ସେତେବେଳେ ଅସ୍ତ୍ରଶସ୍ତ୍ରର ଝଣ୍‌ଝଣ୍ ଧ୍ୱନି ଶ୍ରୁତ ହେଲା । ବୀରବର ଚମକି ପଡ଼ିଲେ । ବୃଦ୍ଧ ତାଙ୍କୁ ପୃଷ୍ଠ ପରି ଅଭୟ ଦେଇ କହିଲେ— 'ତୁମେ ବୀର, ଅସ୍ତ୍ରଶସ୍ତ୍ର-ଶବ୍ଦରେ ଚମକି ପଡ଼ୁଛ !'

ଲଜ୍ଜା, ଅପମାନରେ ବୀରବରଙ୍କ ମୁଖମଣ୍ଡଳ ରକ୍ତିମା ବର୍ଣ୍ଣ ଧାରଣ କଲା । ସେ ଲଜ୍ଜାଲାଞ୍ଛିତ ହୃଦୟରେ ବୃଦ୍ଧା ପ୍ରତି ଦୃଷ୍ଟିପାତ କଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ବୃଦ୍ଧା ସେଠାରେ ଆଉ ଦେଖାଗଲା ନାହିଁ । ସେହି ସୈନିକ ପୁରୁଷ ଓ ଖୋଲ ପତ୍ରବାହକ ମଧ୍ୟ କେଉଁ ଆଡ଼େ ଅଦୃଶ୍ୟ ହୋଇଗଲେ । ସେନାପତି ସ୍ଥିର କଲେ ଯେ, ରତ୍ନାକରର ଗୁପ୍ତ ନିକଟରେ ପହଞ୍ଚିବାରୁ ସେ ତିନି ଜଣ ଭୟରେ ପଳାୟନ କରିଛନ୍ତି । ସେମାନଙ୍କୁ ବାହୁଡ଼ିବାକୁ କହିଲେ । କେତେ ଅନୁନୟ ବିନୟ କଲେ, ଅର୍ଥ-ପ୍ରଲୋଭନ ଦେଖାଇଲେ । ତଥାପି ସେମାନେ ଫେରିଲେ ନାହିଁ । ତିନିହେଁ ମଶାଲ ଧରି ବାଟ ଦେଖାଉଥିଲେ; ଅତଏବ ସେମାନଙ୍କ ପ୍ରସ୍ଥାନରେ ବୀରବର କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ଚତୁର୍ଦ୍ଦିଗରେ ଘନ ଘୋର ଅନ୍ଧକାର । ନିକଟରେ ପାଞ୍ଚ ଜଣ ମାତ୍ର ସୈନିକ । ସେତେବେଳେ କିୟଦ୍ଦୂରରେ ଶୁଷ୍କ ପତ୍ରପୁଞ୍ଜ ମଧ୍ୟରେ ମନୁଷ୍ୟର ପଦଶବ୍ଦ ପରି ଗୋଟିଏ ଧ୍ୱନି ହେଲା । ସେନାପତି ମନେ କଲେ, ବୃଦ୍ଧା ବା ସେହି ଦୁଇ ସୈନିକ ଆସୁଛନ୍ତି । କିନ୍ତୁ କାହିଁ କେହି ଆସିଲା ନାହିଁ ! ଶବ୍ଦ ବି ଆଉ ଶୁଭିଲା ନାହିଁ ! ବୀରବର ଅଗ୍ରସର ହେବାକୁ ଚେଷ୍ଟା କଲେ; କିନ୍ତୁ ସମ୍ମୁଖରେ ଏକ ବୃହତ୍ ବୃକ୍ଷ ଦେହରେ ତାଙ୍କ ମସ୍ତକ ସଙ୍ଘର୍ଷିତ ହେବାରୁ ସେ ପୂର୍ବ ସ୍ଥାନକୁ ଗତି ଫେରାଇବାକୁ ବାଧ୍ୟ ହେଲେ ।

କ୍ରମେ କାଳ-ନିଶା ଶେଷ ହୋଇ ଆସିଲା । ପ୍ରାତଃକାଳରେ ମଧ୍ୟ ବୃଦ୍ଧା ଓ ପତ୍ରବାହକ ଦ୍ୱୟ ବୀରବରଙ୍କ ନିକଟକୁ ପ୍ରତ୍ୟାବୃତ୍ତ ହେଲେ ନାହିଁ । ସେହି ବନ ମଧ୍ୟରେ ସୂର୍ଯ୍ୟରଶ୍ମିର ପ୍ରବେଶଲାଭ ଦ୍ୱିପ୍ରହର ପୂର୍ବ ଭାଗରେ ହୁଏ ନାହିଁ— ମସ୍ତକ ଉପରକୁ ସୂର୍ଯ୍ୟ ନ ଆସିଲେ ସେ ସ୍ଥାନର ଅନ୍ଧକାର ବିଦୂରିତ ହୁଏ ନାହିଁ । ସୈନ୍ୟ ନିକଟରୁ ସେନାପତି କୌଣସି ସାହାଯ୍ୟ ନ ପାଇ ସେଠାରେହିଁ ଅପେକ୍ଷା କରି ରହିଲେ ।

ତାଙ୍କର ଅନୁଚର ବିଶ୍ୱାସ— ବୃଦ୍ଧ ଓ ସୈନିକ ଦୁହେଁ ରତନର ଅନୁସନ୍ଧାନ କରି ଯାଇଛନ୍ତି, ସନ୍ଧାନ ପାଇଲେ ନିଶ୍ଚୟ ବାହୁଡ଼ି ଆସିବେ ।

ଅରଣ୍ୟର ଅନ୍ୟ ସ୍ଥାନରେ ସେନାପତି ବୀରବର ଯେଉଁ ସୈନ୍ୟ ରଖି ଆସିଥିଲେ, ବୃଦ୍ଧ ସେମାନଙ୍କ ପାଖକୁ ଯାଇ କାନ୍ଦି କାନ୍ଦି କହିଲା— "ସେନାପତି ମହା ବିପଦରେ ପଡ଼ିଛନ୍ତି । ତାଙ୍କ ସଙ୍ଗେ ପାଞ୍ଚ ଜଣ ମାତ୍ର ସୈନ୍ୟ, ବିପକ୍ଷରେ ୫୦ ଜଣ ଅସ୍ତ୍ର ଧରି ସେମାନଙ୍କୁ ଘେରି ରହିଛନ୍ତି । ଅନ୍ୟ ପଥରେ ଶୀଘ୍ର ତୁମମାନଙ୍କୁ ନେଇ ଯିବାକୁ ସେନାପତି ମୋତେ ପଠାଇଛନ୍ତି । କି ବିପଦ ! କନ୍ୟାକୁ ଆଉ ପାଇବ ନାହିଁ ଦେଖୁଛି !" ସୈନିକମାନେ ବୃଦ୍ଧ ସଙ୍ଗେ ଦ୍ରୁତ ପଦ ବିକ୍ଷେପରେ ଅରଣ୍ୟର ଆଉ ଗୋଟିଏ ମାର୍ଗରେ ଅଗ୍ରସର ହେଲେ ।

ଏଣେ ସକାଳ ନ'ଟା ବେଳେ ବୀରବର ବିଚଳିତ ହୋଇ ପଡ଼ିଲେ — ପ୍ରତ୍ୟାବର୍ତ୍ତନ କରିବା ଶ୍ରେୟସ୍କର ମନେ କଲେ ନାହିଁ । ସେ ଦୁଇ ଜଣ ସୈନିକଙ୍କୁ ଶରୀର-ରକ୍ଷା ନିମିତ୍ତ ରଖି ଆଉ ତିନି ଜଣଙ୍କୁ ଉକ୍ତ ସୈନ୍ୟ ନିକଟକୁ ପଠାଇ ଦେଲେ । ଭାବିଲେ, ବୃଦ୍ଧ ରତନ ଦଳରେ ଯୋଗ ଦେଇଅଛି, ଅଥବା ରତନ ତାହାର କନ୍ୟାକୁ ଛାଡ଼ି ଦେବାରୁ ସେ ଆଉ ସମ୍ବାଦ ଦେବା ପାଇଁ ବାହୁଡ଼ିବାକୁ ଇଚ୍ଛା କରିନାହିଁ । ତିନି ସୈନିକଙ୍କୁ ବିଦାୟ ଦେବାର କିଛି ସମୟ ପରେ, ଅଳ୍ପ ଦୂରରେ ମନୁଷ୍ୟର ପଦଧ୍ୱନି ଶ୍ରୁତିଗୋଚର ହେଲା । ବୀରବର ଦେଖିଲେ, ଚାରିଜଣ ଭିଲ ଗୋଟିଏ ବସ୍ତ୍ରାବୃତ ଶବ ବହନ କରି ତାଙ୍କ ନିକଟକୁ ଆଣୁଛନ୍ତି । ସେମାନେ ନିକଟକୁ ଆସି କହିଲେ— 'ଆମେମାନେ ରାଜାଙ୍କର ଲୋକ । ରତନସିଂହର ଶବ ବୋହି ଆଣିଛୁ । ତୁମର ଜଣେ ସିପାହୀ ଏହାକୁ ମାରିଛି । ଆଉ ସୈନ୍ୟ ଡକାଇ ଆଣ— ରତନର ଲୋକେ ଧାଇଁ ଆସୁଛନ୍ତି ।'

ସେନାପତିଙ୍କର ହୃଦୟ ଆଶା ଓ ଆହ୍ଲାଦରେ ଉତ୍‌ଫୁଲ୍ଲ ହୋଇ ଉଠିଲା । ସଙ୍ଗେ ସଙ୍ଗେ ବିସ୍ମୟରେ ତାଙ୍କ ମନ ଉଦ୍‌ବେଳିତ ହୋଇ ଗଲା । ପୂର୍ବେ ସେ କେବେ ରତନଗ୍ରେରଙ୍କୁ ଦେଖି ନ ଥିଲେ । ସେ ବସ୍ତ୍ରାଚ୍ଛାଦିତ ନିଶ୍ଚଳ ନିସ୍ପନ୍ଦ ଶରୀରଟି ଦେଖିଲେ । ରତନଦସ୍ୟୁ ଯେ ପ୍ରକୃତରେ ମରିଯାଇଛି, ଏଥିରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । ସେ ଉକ୍ତ ସୈନ୍ୟଦଳକୁ ଚଞ୍ଚଳ ଡ଼ାକି ଆଣିବା କାରଣ ଶରୀରରକ୍ଷୀ ଦୁଇ ଜଣ ସୈନିକଙ୍କୁ ମଧ୍ୟ ପ୍ରେରଣ କଲେ । ତାଙ୍କ ନିକଟରେ ବର୍ତ୍ତମାନ ଶବ ଭିନ୍ନ ଆଉ କେହି ଜଣ ଥିଲି, ରତନ ତସ୍କରର ବସନାବୃତ କଳେବର ଭିନ୍ନ ଆଉ କେହି ନାହିଁ ।

ବୀରବର ଶବର ବିପରୀତ ଦିଗକୁ ମୁଖ ବୁଲାଇ ହୃଷ୍ଟ ଚିତ୍ତରେ ଠିଆ ହୋଇ ଚିନ୍ତା କଲେ— "ଯାହାର ଭୟରେ ରାଜସୈନ୍ୟ ଭୀତ, ବ୍ୟତିବ୍ୟସ୍ତ ହେଉଥିଲେ, ସେହି ଦସ୍ୟୁର ଶବ ବର୍ତ୍ତମାନ ଏଠାରେ—" ଠିକ୍ ସେତିକିବେଳେ କେହି ଜଣେ ତାଙ୍କ ପୃଷ୍ଠ ଭାଗରେ ଠିଆ ହୋଇ ହଠାତ୍ ତାଙ୍କ ହସ୍ତରୁ ତରବାରିଟି ଛଡ଼ାଇ ନେଲା । ସେନାପତି ଚମକି ପଡ଼ିଲେ । ମୁଖ ବୁଲାଇ ଦେଖିଲେ, ମୃତ ରତ୍ନାକର ତାଙ୍କ ସମ୍ମୁଖରେ ଖଡ୍ଗ ହସ୍ତରେ ଦଣ୍ଡାୟମାନ । ବୀରବର ଏକାବେଳକେ ସ୍ତମ୍ଭିତ, କିଂକର୍ତ୍ତବ୍ୟ-ବିମୂଢ଼ ! ସେ ଶବାଧାର ପ୍ରତି ଦୃଷ୍ଟି ନିକ୍ଷେପ କଲେ । ଦେଖିଲେ, ଶବା-ଧାରରେ ଶବ ନାହିଁ— ଶବାଚ୍ଛାଦନ ବସ୍ତ୍ରଟି ମାତ୍ର ପଡ଼ି ରହିଛି । ଭୟ-ବିହ୍ୱଳ ପ୍ରାଣରେ ସେ ରତନଗ୍ରେରର ମସ୍ତକରୁ ପାଦ ଯାଏଁ ଥରେ ନିରୀକ୍ଷଣ କଲେ । ଭଗ୍ନ ସ୍ୱରରେ କହିଲେ— "ମୋ ଆଗରେ କାହାକୁ ଦେଖୁଛି— ରତନଗ୍ରେର ନା ରତନ-ପ୍ରେତ ?"

ରତ୍ନାକର—ଯେ ରତନଗ୍ରେରଙ୍କୁ ମୃତ କରି ପକାଇଥିଲ, ସେ ରତନଙ୍କୁହିଁ ଆଗରେ ଦେଖୁଛ ବୀରବର—ତା'ର ପ୍ରେତ ନୁହେ ।

ରତନ ରତନର ଯମ ହୋଇଥିଲା— ବର୍ତ୍ତମାନ ସେ ବୀରବରର ଯମ ।

ସେନାପତି ଚମକି ପଡ଼ିଲେ ।

ରତ୍ନାକର—ମୋତେ ଧରିବାକୁ ଆସି ତୁ ଯେଉଁ ଅପରାଧ କରିଛୁ, ତୋତେ ତାହାର ପ୍ରାୟଶ୍ଚିତ୍ତ କରିବାକୁ ହେବ ଏହି ହିଂସ୍ର-ଜନ୍ତୁସଙ୍କୁଳ ଅରଣ୍ୟ ମଧ୍ୟରେ, ରତନର ହାତରେ ।

ବୀରବର ଭାବିଲେ— "ଏ ସମସ୍ତ ବ୍ୟାପାର ସ୍ୱପ୍ନ ନା ସତ୍ୟ !" ସବୁ ପ୍ରହେଳିକା ବୋଲି ତାଙ୍କର ମନେ ହେଲା ।

ରତ୍ନାକର—ଯେଉଁ ବୃଦ୍ଧା ରତନଙ୍କର ବିରୁଦ୍ଧରେ ତୋ ଆଗରେ ଅଭିଯୋଗ କରିଥିଲା ସେ ମୁଁ । ଯେଉଁ ଭିଲ ତୋ ପାଖକୁ ମଦନର ପ୍ରଥମ ପତ୍ର ଧରି ଯାଇଥିଲା ସେ ମୋ'ର ଲୋକ । ପରେ ଯେଉଁ ସୈନିକ ପୁରୁଷ ସହକାରୀ ସେନାପତିର ଦ୍ୱିତୀୟ ପତ୍ର ନେଇ ତୋତେ ଦେଇଥିଲା, ସେ ମଧ୍ୟ ମୋ ଦଳର ଜଣେ ଭିଲ ।

ସେ ଦୁଇ ପତ୍ରବାହକଙ୍କୁ ବୀରବରଙ୍କ ନିକଟକୁ କିପରି ପଠାଇଥିଲେ ସବୁ ବର୍ଣ୍ଣନ କରି କହିଲେ— 'ଦୁଇଜଣ ପତ୍ରବାହକଙ୍କୁ କହିଥିଲିଯେ, ମୁଁ ବୃଦ୍ଧା ବେଶରେ ତୋ ନିକଟରେ ପହଞ୍ଚିବା ପରେ ସେମାନେ ଯେପରି ଅଗ୍ରପଶ୍ଚାତ୍ ପତ୍ର ନେଇ ଉପସ୍ଥିତ ହେବେ । ଦଶ ବାର ଜଣ ମୋ ଦଳର ଲୋକଙ୍କୁ ଠିକ୍ ରାଜସୈନ୍ୟ ବେଶରେ ସଜାଇ ବନର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରହିବାକୁ କହି. ସେମାନଙ୍କୁ ଯାହା ଯାହା କରିବାକୁ ହେବ କହି, ପରେ ଏକ ବୃଦ୍ଧା ସ୍ତ୍ରୀ ବେଶରେ ତୋ ନିକଟରେ ଯାଇ

ପଡ଼ିଥିଲ । ମୋ ଦଳର ଲୋକେ ତୋର କେତେକ ସୈନ୍ୟଙ୍କୁ ବନ୍ଦୀ କରିଛନ୍ତି, କେତେକଙ୍କୁ ମାରି ପକାଇଛନ୍ତି । ମଦନ କେବଳ କୌଶଳରେ ପଳାଇଛି । ଏବେ ଦୁଇ ଦିନ ଭିତରେ ମୋ ହାତରେ ତା'ର ନିର୍ଯ୍ୟାତନ ସୁନିଶ୍ଚିତ । ମୋତେ ଧରି ରାଜା ଠାରୁ ପୁରସ୍କାର ପାଇବା ଆଶା ପୋଷିଥିଲୁ । ଦୁଃଖର କଥା, ତୋ ଆଶା ଅପୂର୍ଣ୍ଣ ରହିଗଲା ।'

କଥା ଶେଷ ନ କରୁଣୁ ରତନରେଙ୍ଗର ବୀରବରଙ୍କ ଖଡ୍ଗରେ ତାଙ୍କ ମସ୍ତକ ଦେହଚ୍ୟୁତ କରି ପକାଇଲା ।



୧୭

ସହକାରୀ ସେନାପତି ମଦନ ପ୍ରାଣରକ୍ଷାରେ କୌଶଳ ସହ ରାଜଧାନୀକୁ ପ୍ରତ୍ୟାବୃତ୍ତ ହେଲେ । ସେ ରାଜା ଅଙ୍ଗଧ୍ୱଜଙ୍କୁ ନିଜର, ନିଜ ସୈନ୍ୟର ବିପଦ ଜଣାଇଲେ । ରାଜା ପରେ ଶୁଣିଲେ, ପ୍ରଧାନ ସେନାପତି ବୀରବର ରତନସେନର ହସ୍ତରେ ନିହତ । ପ୍ରଧାନ ଓ ସହକାରୀ ସେନାପତିଙ୍କର, ସୈନ୍ୟର ସମବେତ ଚେଷ୍ଟା, ଚାତୁରୀ, କଳ କୌଶଳ, ଶକ୍ତି ସାହସ ମହାପରାକ୍ରାନ୍ତ ତସ୍କର-ବୀରର ଅସାଧାରଣ ବୁଦ୍ଧିପ୍ରାଖର୍ଯ୍ୟ ନିକଟରେ ବ୍ୟର୍ଥ, ପରାହତ ହୋଇଥିବାର ଦେଖି ରାଜା ଲଜ୍ଜିତ ଓ ବ୍ୟଥିତ ହେଲେ । ମଦନ ରାଜାଙ୍କର ଅନୁଜ୍ଞା ନେଇ, ବୀରବରଙ୍କ ମରଣର ପର ଦିନ, ବହୁ ସୈନ୍ୟ ଧରି ପୁନର୍ବାର ଅରଣ୍ୟ ଅଭିମୁଖରେ ଅଗ୍ରସର ହେଲେ ।

ଅଶ୍ୱାରୋହୀ ଓ ପଦାତିକ ଦଳ ବନରେ ପ୍ରବେଶ କରି ବିଦ୍ରୋହୀ ପକ୍ଷ ଭିଲ ପଲ୍ଲୀ ଚତୁର୍ଦ୍ଦିଗରେ ସତର୍କତା ଅବଲମ୍ବନ କରି ଘେରି ରହିଲେ । ମଦନ ନିଜର ଯଶଃମାନ ଅକ୍ଷୁଣ୍ଣ ରଖିବା ସକାଶେ ଦୃଢ଼-ପ୍ରତିଜ୍ଞ ହୋଇ, କାର୍ଯ୍ୟ ସାଧନରେ ଜୀବନ ପର୍ଯ୍ୟନ୍ତ ଉତ୍ସୃଷ୍ଟ କରି, ସେହି ହିଂସ୍ରଜନ୍ତୁସମାକୁଳ ଅରଣ୍ୟରେ ଏକାକୀ ନିର୍ଭୟ ଚିତ୍ତରେ ପ୍ରବିଷ୍ଟ ହେଲେ । ଅନେକ ସ୍ଥଳରେ ତାଙ୍କର ଗତିରୋଧ ହେଉଥାଏ । ତଥାପି ସେଥି ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଏପରି କିଛି ଦୂର ଯିବା ପରେ, ସେ ଗୋଟିଏ ସ୍ଥାନରେ ଗୋଟିଏ ଅଭୂତପୂର୍ବ ଶବ୍ଦ ଶୁଣିଲେ । ଏକ ଅଜ୍ଞେୟ ଆଶଙ୍କାରେ ତାଙ୍କର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଉଠିଲା । ଶବ୍ଦର କାରଣ ନିରୂପଣ କରିବା ସକାଶେ ସେ ଉତ୍କର୍ଣ୍ଣ ହୋଇ ରହିଲେ । ପୁଣି ସେହି ଧ୍ୱନି ! ବୃକ୍ଷଶାଖା କମ୍ପିତ କରି ଘୋର ଗମ୍ଭୀର ଗହନର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଭେଦ କରି ପ୍ରତିଧ୍ୱନିତ ହେବାକୁ

ଲାଗିଲା । ମଦନଙ୍କର ସାହସ, ମନର ସ୍ଥୈର୍ଯ୍ୟ, ଦୃଢ଼ତା ସବୁ ଭାସିଗଲା । ଚତୁର୍ଦ୍ଦିଗରେ ଗୋଟିଏ ସୃଷ୍ଟିଛଡ଼ା ଭାବ ତାଙ୍କ ପ୍ରାଣକୁ ଉଦ୍‌ବେଳିତ କରି ପକାଇଲା । ଭାବିଲେ, ସୈନ୍ୟମାନଙ୍କ ଠାରୁ ବିଚ୍ଛିନ୍ନ ହୋଇ ଆସିବା ଭଲ ହୋଇନାହିଁ ।

ଧ୍ୱନିଟା କ୍ରମଶଃ ନିକଟରୁ ନିକଟତର ହେବାକୁ ଲାଗିଲା । ସାହସୀ ବୀର ମଦନଙ୍କର ସର୍ବାଙ୍ଗ ଶକ୍ତିଶୂନ୍ୟ, ଅବଶ ହୋଇ ପଡ଼ିଲା । ଶତ ଚେଷ୍ଟା ସତ୍ତ୍ୱେ ସେ ହୃଦୟକୁ ପୁନର୍ବାର ବଳୀୟାନ କରିପାରିଲେ ନାହିଁ । ଶବ୍ଦ ଅତ୍ୟନ୍ତ ନିକଟକୁ ଆସିଲା । ଭୟ ଓ ବିସ୍ମୟରେ ତାଙ୍କର ସମସ୍ତ ଶରୀର ରୋମାଞ୍ଚିତ ହୋଇଗଲା । କ୍ଷୟକ୍ଷଣ ପରେ ଧ୍ୱନିଟା ନିକଟରେ ଆସି ହଠାତ୍ ବନ୍ଦ ହୋଇଗଲା—ସେ ଶୁଷ୍କ ପତ୍ରର ମର୍ମ୍ମର ଧ୍ୱନି ବ୍ୟତୀତ ଆଉ କିଛି ଶୁଣି ପାରିଲେ ନାହିଁ । କୌଣସି ହିଂସ୍ର ଜନ୍ତୁର ଆଗମନ ଆଶଙ୍କାରେ ଖଡ୍ଗ ଉଠାଇ ଠିଆ ହୋଇଛନ୍ତି, ଏପରି ସମୟରେ ନିକଟରେ ଦେଖିଲେ, ଜଣେ ଛିନ୍ନବସ୍ତ୍ରପରିହିତ ଭିଲ— ଦରିଦ୍ରତାର ଯେପରି ଏକ ମୂର୍ତ୍ତିମାନ୍ ଛବି । ଲୋକଟିର ମସ୍ତକରେ କାଷ୍ଠଭାର । ଭିଲ ମସ୍ତକର କାଷ୍ଠ ସବୁ ତଳକୁ ଓହ୍ଲାଇ ହାତ ଯୋଡ଼ି ଅଶ୍ରୁପୂର୍ଣ୍ଣ ନୟନରେ ସହକାରୀ ସେନାପତିଙ୍କ ସମ୍ମୁଖରେ ଠିଆ ହୋଇ କହିଲା— "ହଜୁର୍, ବଡ଼ ବିପଦରେ ପଡ଼ିଛୁ, ରକ୍ଷାକର ।"

ମଦନ ଆଶ୍ୱସ୍ତ ହୋଇ ସ୍ଥିର କଲେ, ଲୋକଟି ଅବଶ୍ୟ ପ୍ରତାରଣା କରିବାକୁ ଆସିନାହିଁ । ତାଙ୍କ ହୃଦୟକୁ ସାହସ, ସହିଷ୍ଣୁତା ଫେରି ଆସିଲା । ସେ ଭିଲକୁ ତାହାର ବିପଦ ବିଷୟ ପଚାରିଲେ । ଗରିବ ଭିଲ ନିଜର କମ୍ପିତ ହୃଦୟ ଉପରେ ଉଭୟ ହସ୍ତ ସଂରକ୍ଷିତ କରି ଉତ୍ତର କଲା,— "ମୁଁ ବଡ଼ ଗରିବ ଲୋକ । କାଠ ବିକି ବଞ୍ଚେଁ । ପ୍ରତିଦିନ

ମୁଁ, ମୋ ଭାର୍ଯ୍ୟା ଏଠାରେ ଆସି କାଠ ହାଣୁଁ । ଅଳ୍ପ ମଧ ଏଥିପାଇଁ ଆସିଥିଲୁଁ । ମୁଁ କାଠ ହାଣିବା ବେଳେ ମୋ ସ୍ତ୍ରୀ କାଠଖଣ୍ଡ ସବୁ ଗୋଟାଇ ବାନ୍ଧୁଥିଲା । ହଠାତ୍ ରତ୍ନାକର ଆସି ତାହାକୁ ଟେକି ନେଇଗଲା । ହତାଶ ହୋଇ ଫେରୁଥିଲି— ତୁମକୁ ଦେଖି ମନକୁ ଅଳ୍ପ ବାନ୍ଧୁଡ଼ ଆସିଛି । ସାହାଯ୍ୟ କର ।"

ଏହା କହି ସେହି ଦୀନ ଦରିଦ୍ର ବ୍ୟକ୍ତି ଦୁଇ ହସ୍ତ ଦ୍ୱାରା ତାହାର ଲୋତକସିକ୍ତ ନୟନଦ୍ୱୟ ଆବୃତ କଲା । ରତ୍ନାକରର ନାମ ଶୁଣିବା କ୍ଷଣି ମଦନ ଆନନ୍ଦରେ ନୃତ୍ୟ କଲେ । ସେ ଈଶ୍ୱରଙ୍କୁ ଶତ ଧନ୍ୟବାଦ ପ୍ରଦାନ କଲେ । ଅଶାକୁହକିନୀ ତାଙ୍କ କର୍ଣ୍ଣ କୁହରରେ କେତେ ପ୍ରକାର ଆଶା କଥା ଢ଼ାଳିବାକୁ ଲାଗିଲା । ହର୍ଷବିହ୍ୱଳ ହୋଇ ସେ ଭିଲର ଧୂଳିଧୂସରିତ ମଳିନ ହସ୍ତ ଧରି କହିଲେ—"ରତ୍ନାକରକୁ ଦେଖାଇ ଦେଲେ ତୋତେ ମୁଦିଏ ପୁରସ୍କାର ଦେବ ।" ଅର୍ଙ୍ଗ୍ରାସୀ କଥା ଶୁଣି ଭିଲର ମଳିନ ମୁଖପ୍ରାନ୍ତରେ ହାସ୍ୟରେଖା ପ୍ରତିଭାତ ହେଲା । ରତ୍ନାକରକୁ ଦେଖାଇ ଦେବାକୁ ସେ ସ୍ୱୀକୃତ ହେଲା । ମଦନ କହିଲେ, "ରତ୍ନ ପାଖକୁ ଏକାକୀ ଯିବା ଭଲ ନୁହେ । ମୁଁ ମୋର ସୈନ୍ୟଙ୍କୁ ଡାକି ଆଣେଁ ।"

ଭିଲ— ନା ନା ହଜୁର ! ସୈନ୍ୟ ଡାକି ଆଣ ନାହିଁ । ତାହାହେଲେ ଆମର ସମସ୍ତ ଚେଷ୍ଟା ପଣ୍ଡ ହୋଇଯିବ— ରତ୍ନ ପଳାଇବ ।

ମଦନ—ପଳାଇବ କିପରି ? ଚାରିଆଡ଼େ ସୈନ୍ୟ ଜଗାଇ ରଖିଛି ।

ଭିଲ— ତାହାହେଲେ ଦେଖନ୍ତୁ, ରତ୍ନକୁ ତୁମେ ଧରିବାକୁ ଆସିଛ !

ମଦନ—ଅବଶ୍ୟ, ନରପିଶାଚ ଦସ୍ୟୁକୁ ଧରିବାକୁ ଆସିଛି ।

ଖିଲ— ଏବେ ସୈନ୍ୟ ସାମନ୍ତ ଆସିଛନ୍ତି, ଆଉ ଭୟ ନାହିଁ । ତେବେ ଏଇକ୍ଷଣି ସୈନ୍ୟ ଆଣନାହିଁ, ଏ ନିକଟରେ ରତନର ଶୁଷ୍କ ପର୍ଣ୍ଣ-ନିର୍ମିତ କ୍ଷୁଦ୍ର ଦୁର୍ଗ ଅନାୟାସରେ ଦେଖାଇ ଦେଇ ପାରେଁ । କିନ୍ତୁ ତୁମେ ଯାହା ଅଙ୍ଗୀକାର କରୁଛ ବୋଧହୁଏ ତାହା କେବେ ଭୁଲି ଯିବନାହିଁ । ମୋ ସ୍ତ୍ରୀକି ଖୋଜି ବାହାର କରି-ଦେବ, ଆଉ ରତନକୁ ଦେଖାଇ ଦେଲେ ତୁମର ଏ ମୁଦ୍ରିକ ମୋତେ ଦେବ ।

ମଦନ—ନିଶ୍ଚୟ ଦେବ । ସ୍ୱର୍ଗରେ, ମର୍ତ୍ତ୍ୟରେ ଯେଉଁଠି ଥାଉ ତୋ ସ୍ତ୍ରୀକୁ ଉଦ୍ଧାର କରି ତୋ ହାତରେ ଆଣି ଅର୍ପଣ କରିବି । ଏ ମୋର ଶପଥ ।

ବୋଝଭାରବାହୀ ଖିଲ ପ୍ରଫୁଲ୍ଲ ମୁଖରେ ମଦନଙ୍କର ଅଗ୍ରଗାମୀ ହେଲା । ସେତେବେଳେ ସେନାପତିଙ୍କ ମାନସପଟରେ ଆଶାଦେବୀ ଜଗନ୍ମୋହିନୀ ମୂର୍ତ୍ତିରେ ଉଦ୍‌ଭାସିତ ହେଲେ । ସେତେବେଳେ ତାଙ୍କ ଚକ୍ଷୁ ସମକ୍ଷରେ ସେ ଗୋଟିଏ ନୂତନ ଜଗତ ଦେଖିବାକୁ ପାଇଲେ—ଯେଉଁଠାରେ ଅତୁଳ ଯଶଃ, ଅସୀମ ପଦମର୍ଯ୍ୟାଦା, ପ୍ରଚୁର ଧନ ଗୌରବ ତାଙ୍କର ସମ୍ବର୍ଦ୍ଧନା କରିବା ପାଇଁ ଉପସ୍ଥିତ । ଯେଉଁ ଦସ୍ୟୁ ବନ୍ଧୁହନ ଧରି ରାଜ୍ୟ-ଶାସନ-ଦଣ୍ଡର ଅବମାନନା କରି ଆସୁଅଛି, ରାଜକ୍ଷମତାକୁ ବାଧିତ କରୁ ଅଛି, ସେହି ତସ୍କରର ଦୋର୍ଦ୍ଦଣ୍ଡ ପ୍ରତାପରୁ ଅଙ୍ଗାଧିପଙ୍କ ରାଜ୍ୟକୁ ରକ୍ଷା କରି ପାରିଲେ ତାଙ୍କର ଭାଗ୍ୟ ଯେ ସୁପ୍ରସନ୍ନ ହେବ ଏଥିରେ ତାଙ୍କର ବିନ୍ଦୁବିସର୍ଗ ସଂଶୟ ରହିଲା ନାହିଁ ।

ତୁହେଁ ଅଳ୍ପ ଦୂର ଅଗ୍ରସର ହେବା ଉତ୍ତାରେ ପୁନର୍ବାର ପଥରୋଧ ହୋଇ ଆସିଲା— ବୃକ୍ଷପୁଞ୍ଜର ଘନ ଆବରଣ ଭେଦ କରିବା ଦୁଃସାଧ

ହୋଇ ଉଠିଲା । ଭିଲ ମଦନଙ୍କୁ କହିଲା—"ଏଠାରେ ଅଶ୍ୱ ବାନ୍ଧ ରଖ । ତୁମର ଖଣ୍ଡା, ଢାଲ ଆଉ ଯାହା ଯାହା ଧରିଛ ସବୁ ମୋତେ ଦିଅ । ଏ ସବୁ ଜିନିଷ ବୋହି ଏ ସଂକୀର୍ଣ୍ଣ ପଥରେ ଯିବା ତୁମ ପକ୍ଷରେ ସହଜସାଧ୍ୟ ନୁହେଁ ।" ସେନାପତି ବିନା ବାକ୍ୟବ୍ୟୟରେ ଭିଲ ହାତକୁ ତରବାରି ଇତ୍ୟାଦି ବଢ଼ାଇ ଦେଲେ । ଅତ୍ୟନ୍ତ କଷ୍ଟରେ ଆଉ କେତେକ ଦୂର ଗଲେ । ଦେଖିଲେ, ଆଗରେ ଗୋଟିଏ ଉନ୍ମୁକ୍ତ ସ୍ଥାନ, ତାହାର ମଧ୍ୟଭାଗରେ ଗୋଟିଏ ପର୍ଣ୍ଣକୁଟୀର । ଦୁହେଁ କୁଟୀର ନିକଟରେ ଯାଇ ପହଞ୍ଚିଲେ । ମଦନ ଭିଲକୁ ତାଙ୍କର ଖଡ୍ଗ ଇତ୍ୟାଦି ଫେରାଇ ଦେବାକୁ କହିଲେ । ଭିଲ କିନ୍ତୁ ହସି ହସି କହିଲା—'ତରବାରି ତୁମର କି ଆବଶ୍ୟକ ?' ସେ ମସ୍ତକରୁ କାଷ୍ଠଭାର ଓହ୍ଲାଇଲା । ମଦନଙ୍କୁ ସହାସ୍ୟ ମୁଖରେ ଅନାଇଁ ଠିଆ ହେଲା ।

ଏଥି ପୂର୍ବେ ଦାରିଦ୍ର୍ୟ ଦୁଃଖର ଯେଉଁ ଘନ ଛାୟା ବୋଧହୁଏ ଭିଲର ମୁଖମଣ୍ଡଳ ଆଚ୍ଛନ୍ନ କରି ରଖିଥିଲା, ତାହା ମୁହୂର୍ତ୍ତ ମଧ୍ୟରେ କେଉଁ ଆଡ଼େ ଅପସାରିତ ହୋଇଗଲା । ହାସ୍ୟରାଗ-ରଞ୍ଜିତ ହୋଇ ତାହାର ସମସ୍ତ ବଦନମଣ୍ଡଳ, ବିଜୟୀ ସେନାପତିର ମୁଖ ପରି, ଆହ୍ଲାଦରେ ଆଲୋ-ମୟ ହୋଇ ଉଠିଲା । ସେ କିଞ୍ଚିତ୍ ଗମ୍ଭୀର କଣ୍ଠରେ କହିଲା,— "ଯେ ରତନଶେରକୁ ଦେଖାଇଦେବା ପାଇଁ ତୋତେ ଏଠାକୁ ନେଇ ଆସିଛି, ଜାଣେ ସେ ରତନଶେର । ଯାହାକୁ ଧରିବା ନିମନ୍ତେ ତୁମେମାନେ ଏତେ ବ୍ୟଗ୍ର ଏତେ ବ୍ୟାକୁଳ, ସେହି ଅଧମ ନରପିଶାଚ ପାଷଣ୍ଡ ରତନ ତୋ ସମ୍ମୁଖରେ । ତୁ ଏ ପର୍ଣ୍ଣକୁଟୀରରେ ଆଜି ଅତିଥି—ଶ୍ରମ ଦୂର କର୍ । ମୋର ମୁଦ୍ରିକା-ପୁରସ୍କାର ଦରକାର ନାହିଁ—ଜାଣେ ତୁ ମୋର ଶ୍ରେଷ୍ଠ ପୁରସ୍କାର, ଈପ୍ସିତ ଉପହାର । ମୁଁ ଏହି ପୁରସ୍କାର ନେଇ ମୋର ପ୍ରତିହିଂସା-ବୃତ୍ତିକୁ ତୃପ୍ତ କରିବ ।"

ମଦନ କିଂକର୍ତ୍ତବ୍ୟବିମୂଢ଼ ହୋଇ ପ୍ରସ୍ତରମୂର୍ତ୍ତିବତ୍ ନିଶ୍ଚଳ ଭାବରେ ଦଣ୍ଡାୟମାନ ! ତାଙ୍କର ସ୍ମୃତି, ବୁଦ୍ଧି ସମସ୍ତ ବିଲୁପ୍ତ ପ୍ରାୟ—ମସ୍ତିଷ୍କ ନିସ୍ତେଜ, ଅକର୍ମଣ୍ୟ ! ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ସେତେବେଳେ ତାଙ୍କ ନିକଟରେ ଭ୍ରାମ୍ୟମାଣ ବୋଧ ହେଲା ।

ରତନ:—ମଦନ, ମୋତେ ଧରି ପାରିଲୁ ନାହିଁ ବୋଲି ଦୁଃଖ କରୁଛୁ ? ଯଦି ମୋର ବିନାଶସାଧନରେ ତୁ ଦୃଢ଼ପ୍ରତିଜ୍ଞ, ଯଦି ଏ କାର୍ଯ୍ୟୋଦ୍ଧାର ଉପରେ ତୋର ଉନ୍ନତି ନିର୍ଭର କରେ, ତାହାହେଲେ ମୁଁ ଧରା ଦେବି ।

ମଦନ ବାକ୍‌ଶୂନ୍ୟ ହୋଇ ଭାବିଲେ—"ରତନ କଣ ସରଳ ଭାବରେ ନା' ମନର ଭାବ ବ୍ୟକ୍ତ କରୁଛି, ନା ଏହା ତାହାର ଚିର ପ୍ରସିଦ୍ଧ କପଟତାର ଅନ୍ୟ ଏକ ନିଦର୍ଶନ !"

ରତନ:—ମୋତେ ଏତେ ଅବିଶ୍ୱାସ କରୁଛୁ କାହିଁକି ମଦନ ? ମୁଁ ପ୍ରତିଜ୍ଞା କରି କହୁଛି, ଦରକାର ହେଲେ ନିଶ୍ଚୟ ଆତ୍ମସମର୍ପଣ କରିବି ।

ମଦନ:—ଯାହାର ସମସ୍ତ ଜୀବନ ପରସ୍ୱହରଣରେ ନିୟୋଜିତ, ସେ ଯେ ଆଜି ନିଜର ଅମୂଲ୍ୟ ଜୀବନ ଦାନ କରିବାକୁ ଉଦ୍ୟତ, ଏ କଥାରେ ବିଶ୍ୱାସ ହେଉ ନାହିଁ ।

ରତନ:—ହାଃ ହାଃ ହାଃ ! ପରସ୍ୱହରଣ ! ଏତେ ଗର୍ବ ମଦନ ତୋର ! ଗରିବ ନିଃସହାୟ ଅନାଥଙ୍କ ଜାତିର ଦୁଃଖ ଦୂର କରିବା ପାଇଁ ଅତୁଳ ଐଶ୍ୱର୍ଯ୍ୟସଂପନ୍ନ ଲୋକଙ୍କୁ ତାଡ଼ନା କରି, ହତ୍ୟା କରି ସେମାନଙ୍କର ଧନ ହରଣ କରି ନେଉଛି ।

ବୁଝିଲୁ ? ସୈନ୍ୟ ସାହାଯ୍ୟରେ ମୋତେ ଧରି ନେବୁ ଆଶା କରୁଛୁ ? ବୃଥା ଆଶା ! କାଲି ଫିଟି ପଳାଇଥିଲୁ—ଆଜି ତୋର ଆଉ ରକ୍ଷା ନାହିଁ ।

ସେତେବେଳେ ଦଶ ବାର ଜଣ ସିପାହି ସେଠାରେ ଆସି ଉପସ୍ଥିତ ହେଲେ । ଭଡନଗ୍ରେରର ଆଦେଶରେ ସେମାନେ ମଦନଙ୍କର ହସ୍ତପଦ ଗୋଟିଏ ଦୃଢ଼ ଦୀର୍ଘ ରଜ୍ଜୁରେ ଆବଦ୍ଧ କରି ଦେଲେ । ପରେ ତାଙ୍କୁ ବୋହି ନେଇ ଉମାଜୀ ଗୃହର ଭୂଗର୍ଭ କକ୍ଷରେ ବନ୍ଦୀ କରି ରଖିଲେ ।



୧୭

ପୂର୍ବ ପରିଚ୍ଛେଦରେ କହାଯାଇଛି, ଅଙ୍ଗାଧିପଙ୍କର ସହକାରୀ ସେନାପତି ମଦନ ବହୁ ସୈନ୍ୟ ସଙ୍ଗେ ଧରି ଅରଣ୍ୟ ମଧ୍ୟରେ ପ୍ରବେଶ କଲେ । ସେତେବେଳେ ମଧ୍ୟାହ୍ନ । ତାଙ୍କର ଅଶ୍ୱାରୋହୀ ଓ ପଦାତିକ ସୈନିକମାନେ ଭିଲ ପଲ୍ଲୀଗୁଡ଼ିକ ବେଷ୍ଟନ କରି ରହିଲେ ଏବଂ ମଦନ ଏକାକୀ ବନରେ ପ୍ରବିଷ୍ଟ ହେଲେ । ସୈନିକମାନେ ସେନାପତିଙ୍କର ଆଦେଶ ଅପେକ୍ଷା କରି ସେଠାରେ ରହିଲେ, ଆଉ ଅଗ୍ରସର ହେଲେ ନାହିଁ । ଇତିମଧ୍ୟରେ ମଦନ ଚକ୍ରାନ୍ତରେ ଆବଦ୍ଧ ହୋଇ ରତନଗିରିର ଭୂଗର୍ଭ ଗୃହକୁ ନୀତ ହେଲେ । ଏ ସମ୍ବାଦ ତାଙ୍କ ସୈନ୍ୟମାନେ ପାଇ ପାରିଲେ ନାହିଁ ।

ଦେଖୁଁ ଦେଖୁଁ ଅପରାହ୍ନ ଅତୀତ ହୋଇଗଲା । ଅଥଚ ମଦନଙ୍କର କୌଣସି ଆଦେଶ କିମ୍ବା ସମ୍ବାଦ ଆସିଲା ନାହିଁ । ସୈନିକମାନେ ଘୋର ସନ୍ଦେହରେ ପଡ଼ିଲେ, ପ୍ରମାଦ ଗଣିଲେ । ଖବର ନ ପାଇବା ପର୍ଯ୍ୟନ୍ତ ଅରଣ୍ୟର ଆହୁରି ଭିତରକୁ ଯିବାକୁ ହେବନାହିଁ— ଏହା ଥିଲା ମଦନଙ୍କର କଡ଼ା ହୁକୁମ । ସେନାପତିଙ୍କର ବିନା ଆଦେଶରେ ଅରଣ୍ୟରେ ଆଉ ବେଶୀ ଦୂର ଯାଇ ପାରିଲେ ନାହିଁ ଅଥବା ରାଜଧାନୀକି ଫେରି ପାରିଲେ ନାହିଁ । ସେନାପତିଙ୍କ ଆଦେଶ ଅମାନ୍ୟ କଲେ ଶାସ୍ତି ଯେ ସୁନିଶ୍ଚିତ ଏହା ସେମାନେ ଉତ୍ତମରୂପେ ଜାଣନ୍ତି । ପ୍ରାୟ ସନ୍ଧ୍ୟା ପର୍ଯ୍ୟନ୍ତ ମଦନଙ୍କ ନିକଟରୁ କିମ୍ବା ତାଙ୍କ ସମ୍ବନ୍ଧରେ କୌଣସି ସମ୍ବାଦ ନ ଆସିବାରୁ ସୈନିକମାନେ ସେମାନଙ୍କ ମଧ୍ୟରୁ କେତେକ ଜଣଙ୍କୁ ରାଜାଙ୍କ ନିକଟକୁ ପଠାଇବା ଶ୍ରେୟସ୍କର ମନେ କଲେ । କୋଡ଼ିଏ ଜଣ ସୈନିକ ରାଜଧାନୀକୁ ପ୍ରତ୍ୟାବୃତ୍ତ ହୋଇ, ମଦନଙ୍କର ସମ୍ବାଦ ନ ପାଇବା କଥା ଜଣାଇଲେ । ଅଙ୍ଗାଧିପଙ୍କ ଦୁଃଖ ଓ ବିସ୍ମୟର ସୀମା ରହିଲା ନାହିଁ ।

ରାଜା ସେହି ମୁହୂର୍ତ୍ତରେ ରାଜ୍ୟର ପ୍ରଧାନ ସଚିବଙ୍କୁ, ଅନ୍ୟାନ୍ୟ ମନ୍ତ୍ରୀ ଓ ସେନାପତିଗଣଙ୍କୁ ଏବଂ ଭାରବଙ୍କ ପୁତ୍ର, ଭୈରବଙ୍କୁ ଡକାଇ ପଠାଇଲେ । ସେମାନେ ଯାଇ ଅର୍ଥନୃପଙ୍କ ସମୀପରେ ସମବେତ ହେଲେ । ରାଜାଙ୍କ ମୁଖରୁ ସୈନିକଗଣଙ୍କ ଆଗତ ସମ୍ବାଦ ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ । ମଦନଙ୍କର ଶକ୍ତି ଓ ସାହସରେ ସମସ୍ତଙ୍କର ତେର ଆସ୍ଥା, ବିଶ୍ୱାସ । ତଥାପି ସନ୍ଦେହ ସେମାନଙ୍କୁ ଅସ୍ଥିର, ହତାଶ କରି ପକାଇଲା । ସମସ୍ତେ ମିଶି ଗୋଟିଏ କିଛି ପ୍ରତିକାର ଆଲୋଚନା କରିବାକୁ ଯାଉଛନ୍ତି, ଏହି ସମୟରେ ଜଣେ ଭିଲ ଆସି ରାଜାଙ୍କ ହସ୍ତରେ ଉତନସ୍ତୈରର ଖଣ୍ଡିଏ ପତ୍ର ଦେଲା । ସେମାନଙ୍କ ମଧ୍ୟରେ ଶୃଙ୍ଖଲ୍ୟର ଗୋଟିଏ ଖର ସ୍ରୋତ ପ୍ରବାହିତ ହୋଇଗଲା । ପତ୍ରର ବିଷୟ ଶୁଣିବାକୁ ସମସ୍ତେ ଉତ୍କଣ୍ଠିତ ହୋଇ ଉଠିଲେ ।

ରାଜାଙ୍କ ଅଦେଶରେ ଉପସ୍ଥିତ ସୈନିକମାନେ ଭିଲ ପତ୍ର-ବାହକକୁ ସେଠାରେ ଶୃଙ୍ଖଲାବଦ୍ଧ କରି ରଖିଲେ । ପ୍ରଧାନ ମନ୍ତ୍ରୀ ଉଚ୍ଚ ସ୍ୱରରେ ପତ୍ର ପାଠ କରି ସମବେତ ଲୋକଙ୍କୁ ଶୁଣାଇଲେ । ଲେଖା ଥିଲା:—

"ଦାମ୍ଭିକ ରାଜା,

ତୁମର ଦୁଃଶାହସୀ କର୍ମଚାରୀମାନେ, ରାଜ୍ୟର ଅବିବେକୀ ଆର୍ଯ୍ୟଗଣ ନିରୀହ ଶାନ୍ତ ଭିଲଜାତି ଉପରେ ବରାବର ଅତ୍ୟାଚାର କରି ଆସୁଛନ୍ତି । ତୁମେ ସେମାନଙ୍କର ଏ ଅନ୍ୟାୟ କାର୍ଯ୍ୟରେ ବାଧା ଦେଉନାହିଁ—ବରଂ ପ୍ରଶ୍ରୟ ଦେଉଅଛ । ତୁମମାନଙ୍କର ଅତ୍ୟାଚାର ଅତିରିକ୍ତ, ଅସହ୍ୟ ହେବାରୁ ତୁମମାନଙ୍କ ବିରୋଧରେ ଭିଲ ଅଜ ଖଡ୍ଗହସ୍ତ । ଭିଲ ଜାତିର ଦୃଢ଼ ପ୍ରତିଜ୍ଞା—ରାଜ୍ୟବାସୀ ଅନାର୍ଯ୍ୟମାନଙ୍କର ଧ୍ୱଂସସାଧନ କରିବ, ନଚେତ୍ ପ୍ରତିହିଂସା-ସାଧନରେ ଜୀବନ ଦେବ ।

"ଜାଣି ରଖ, ଆର୍ଯ୍ୟ-ଅତ୍ୟାଚାରରୁ ଅନାର୍ଯ୍ୟର ଉଦ୍ଧାରସାଧନ ବର୍ତ୍ତମାନ ମୋ ଜୀବନର ଏକମାତ୍ର ବ୍ରତ । ମୋର ପ୍ରତାପ, ପରାକ୍ରମ ଜାଣି ଶୁଣି ସୁଦ୍ଧା ତୁମମାନଙ୍କର ଯେ ଚୈତନ୍ୟୋଦୟ ହୋଇ ନାହିଁ, ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ବୃଦ୍ଧା ଭିଲ ବେଶରେ ତୁମ ରାଜ୍ୟର ଗର୍ବ ବୀରବରଙ୍କୁ ପ୍ରତାରିତ କରି ନେଇ ବନରେ ହତ୍ୟା କରିଅଛୁ । ତାହାର ମରଣରେ ରତନର ଶକ୍ତି, ପ୍ରଭାବର ଢେର ପରିଚୟ ପାଇଛ । ଅଥଚ ମୋତେ ଧରିବା ପାଇଁ ମଦନଙ୍କୁ ପଠାଇ କମ୍ ବିବେକହୀନତାର ପ୍ରମାଣ ଦେଇ ନାହିଁ । ମଦନର ଅବସ୍ଥା ହୋଇଛି କଣ ଜାଣ ? ଆଜି କାମ୍ବୁବାହା ଗରୀବ ଭିଲ ବେଶରେ ତାହାକୁ ଭୁଲାଇ ନେଇ ବନ୍ଦୀ କରି-ଅଛୁ । ବର୍ତ୍ତମାନ ସେ ମୋ ଗୃହର ଭୂଗର୍ଭ କକ୍ଷରେ ।

"ଯଦି ସାହସୀ, ଉଦାର ଭିଲ ଜାତିର ସାହାଯ୍ୟ ସହାନୁଭୂତି ଚାହଁ, ଭକ୍ତି ଆଦର ଚାହଁ, ତାହାହେଲେ ସେମାନଙ୍କ ସହିତ ସ୍ନେହ-ବନ୍ଧନରେ ଆବଦ୍ଧ ହୁଅ । ସଦ୍ଭାବ ନ ରଖି ସେମାନଙ୍କ ଉପରେ ଅଧିକ ଅତ୍ୟାଚାର କଲେ, ମୋତେ ଧରିବା ନିମନ୍ତେ ଆଉ କାହାକୁ ପଠାଇଲେ, ସାବଧାନ, ତୁମର ଆଉ ରକ୍ଷା ନାହିଁ, ରାଜ୍ୟର ଆଉ ରକ୍ଷା ନାହିଁ ।

— ରତନ —"

ପତ୍ର ଶୁଣି ସମସ୍ତେ ଏକାବେଳକେ ସ୍ତବ୍ଧ, ବିସ୍ମିତ ! କେତେକଙ୍କ ପ୍ରାଣରେ ଆତଙ୍କ ଉପସ୍ଥିତ ହେଲା । ଅନ୍ୟଲୋକଙ୍କ ମଧ୍ୟରେ ଉଗ୍ର କୋପ ଓ ଉତ୍ତେଜନାର ଗୋଟିଏ ଉତ୍ତାଳତରଙ୍ଗ ଖେଳିଗଲା । ସମବେତ ଲୋକଙ୍କ ମଧ୍ୟରେ ଯେଉଁମାନେ ରତନ ପ୍ରତି ଅତିଶୟ ରାଗରେ ଅଥୟ ହୋଇ ପଡ଼ିଲେ, ଉତ୍ତେଜିତ ହୋଇ ଉଠିଲେ, ସେମାନଙ୍କ ମଧ୍ୟରେ ସର୍ବପ୍ରଧାନ ଥିଲେ ବୀରବର-ପୁତ୍ର ଭୈରବ ।

ଭୈରବ ଷାରବରଙ୍କର ଜ୍ୟେଷ୍ଠ ପୁତ୍ର— ଅତ୍ୟନ୍ତ ଉତ୍ସାହୀ, ସାହସୀ, ବଳବାନ୍ ଯୁବକ । ସେ ରାଜାଙ୍କର ସୈନ୍ୟବିଭାଗରେ କାର୍ଯ୍ୟ କରୁଥିଲେ । ପିତାଙ୍କର ମୃତ୍ୟୁ ସମ୍ବାଦ ପାଇବା ମାତ୍ରକେ ସେ ଦିନ ଭୈରବ ହୃଦରେ ଜନ୍ମତ୍ରାସ୍ତ ହୋଇ ଉଠିଥିଲେ, ନିଜେ ଯାଇ ଭଡନକୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଥିଲେ । କିନ୍ତୁ ସହକାରୀ ସେନାପତି ସେ କାର୍ଯ୍ୟରେ ଅତତ୍ପର ହେବାରୁ ସେ କ୍ଷାନ୍ତ ହେଲେ— ସୁଯୋଗ ପ୍ରତୀକ୍ଷାରେ ଥିଲେ । ସୁଯୋଗ ବର୍ତ୍ତମାନ ଉପସ୍ଥିତ । ଭୈରବ ଅଶ୍ରୁ ଚକ୍ଷୁରେ, କୋପ-କମ୍ପିତ ଶରୀରରେ ଉଠି ରାଜାଙ୍କୁ ଜଣାଇଲେ —"ବ୍ୟସ୍ତ, ନିରଶ ହୁଅନ୍ତୁ ନା ମହାରାଜ ! ରାଜ୍ୟର ପ୍ରଧାନ ସେନାପତି ଇହଲୋକରୁ ଚାଲି ଯାଇଛନ୍ତି; କିନ୍ତୁ ତାଙ୍କର ଶକ୍ତି, ସାହସ ତାଙ୍କ ପୁତ୍ରର ଦେହରେ ସଞ୍ଚିତ ଅଛି । ଷାରବର ଭଡନକୁ ଧରି ଆଣି ପାରିଲେ ନାହିଁ ବୋଲି ଦୁଃଖ କରନ୍ତୁ ନା । ଦ୍ୱିତୀୟ ବୀରବର ଭୈରବକୁ ଅନୁମତି ଦିଅନ୍ତୁ । ସେ ନିଶ୍ଚୟ ଭଡନକୁ ମାରି ବା ଜୀବନରେ ଧରି ଆଣିବ । ମନେ ରଖନ୍ତୁ— ଏହା ଭୈରବର ଭୈରବ ପ୍ରତିଜ୍ଞା ।"

ସମସ୍ତେ ମୁଗ୍ଧ, ଚକିତ ! ଭୈରବଙ୍କର ସମୟୋଚିତ ଅଭୟ ବାଣୀ, ଭୀଷଣ ପ୍ରତିଜ୍ଞା ରାଜା ଓ ଅନ୍ୟ ଲୋକଙ୍କ ପ୍ରାଣରେ ଗଭୀର ଆଶା, ଆଶ୍ୱାସନା ଢାଳି ଦେଲା । ସେଠାରେ ଉଲ୍ଲାସ, ଉନ୍ମାଦନାର ଗୋଟିଏ ପ୍ରବଳ ଲହରୀ ନାଚି ଉଠିଲା । ପ୍ରଧାନ ମନ୍ତ୍ରୀଙ୍କ ପରାମର୍ଶରେ, ଅଙ୍ଗାଧିପ ଭୈରବଙ୍କୁ ଭଡନକୁ ଧରିବା ପାଇଁ ଯିବାକୁ ଆନନ୍ଦ ସହିତ ଅନୁଜ୍ଞା ଦେଲେ । ପରଦିନ ଭୈରବ ବୃହତ୍ ସେନା ଧରି ଭୀଲ-ବନକୁ ଯିବାର ସ୍ଥିର ହେଲା । ରାଜାଙ୍କ ଆଦେଶରେ ସେହି କୋଡ଼ିଏ ସୈନିକ ଅରଣ୍ୟକୁ ପୁଣି ଧାଇଁ ଯାଇ ଅନ୍ୟାନ୍ୟ ସମସ୍ତ ସୈନ୍ୟଙ୍କୁ ରାଜଧାନୀକୁ ଡାକି ଆଣିଲେ । ମଦନଙ୍କର ଶୋଚନୀୟ ଅବସ୍ଥାରେ ସୈନିକମାନଙ୍କର ଦୁଃଖ

ବିପ୍ଳବର ଆଉ ସୀମା ମାନିଲା ନାହିଁ । ମଦନଙ୍କର ପରିବାର ମର୍ମାହତ ହୋଇ ପଡ଼ିଲେ । ଏ ସମ୍ବାଦ ନଗରବାସୀମାନ ରାଷ୍ଟ୍ର ହୋଇଗଲା । ପ୍ରଧାନ ମନ୍ତ୍ରୀ ଓ ଭୈରବ ଯାଇ ମଦନ-ପରିବାରଙ୍କୁ ସାନ୍ତ୍ୱନା ଦେଲେ ।

ଇତିପୂର୍ବେ ଭୈରବ ଅନେକ ସମୟରେ ନିଜର ଅପୂର୍ବ ଭୁଜବଳ, ସାହସ ଓ ବିଚିତ୍ର ସମରନୈପୁଣ୍ୟର ସ୍ପଷ୍ଟ ପରିଚୟ ଦେଇ ରାଜା, ରାଜ-କର୍ମଚାରୀ ଓ ପ୍ରଜାମାନଙ୍କୁ ମୁଗ୍ଧ, ଚକିତ କରିଥିଲେ । ଅଙ୍ଗାଧିପ ତାଙ୍କର ପ୍ରଗାଢ଼ ରାଜଭକ୍ତି, ସଚ୍ଚରିତ୍ରରେ ବିଶେଷ ତୃପ୍ତ ଥିଲେ । ତାଙ୍କର ଦୃଢ଼ ଧାରଣା, ଭୈରବ ଯୋଗ୍ୟ ପିତାଙ୍କର ଯୋଗ୍ୟ ପୁତ୍ର । ରାଜା ବର୍ତ୍ତମାନ ଭୈରବଙ୍କୁ କେବଳ ସୈନ୍ୟ-ପରିଚାଳନା-କ୍ଷମତା ପ୍ରଦାନ କଲେ ନାହିଁ— ତାଙ୍କୁ ବୀରବରଙ୍କ ସ୍ଥାନରେ, ପ୍ରଧାନ ସେନାପତି ପଦରେ ନିଯୁକ୍ତ କଲେ । ତାଙ୍କର ଏ ନିଯୁକ୍ତିରେ ପ୍ରଜାପୁଞ୍ଜ ସନ୍ତୁଷ୍ଟ, ଆନନ୍ଦିତ ହେଲେ । ବିଶେଷତଃ ମନ୍ତ୍ରଣା-ସଭାରେ ଭୈରବଙ୍କର ସାହସବ୍ୟଞ୍ଜକ, ଉତ୍ସାହପୂର୍ଣ୍ଣ ପ୍ରତିଜ୍ଞା ଶୁଣିବା ପରେ, ତାଙ୍କ ଶକ୍ତି ସାମର୍ଥ୍ୟରେ ଲୋକଙ୍କର ଯେଉଁ ଆସ୍ଥା ଥିଲା ତାହା ଶତଗୁଣ ବୃଦ୍ଧି ପାଇଲା । ସେ ରାତି ଭୈରବ ପ୍ରଧାନ ସେନାପତି ପଦରେ ନିଯୁକ୍ତ ହେବା ସମ୍ବାଦ ନଗରର ସମସ୍ତ ସୈନ୍ୟ, ଦଣ୍ଡନାୟକ ଓ ପ୍ରଜାଙ୍କ ମଧ୍ୟରେ ପ୍ରଚାରିତ ହୋଇଗଲା ଏବଂ ତାଙ୍କର ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରିବା କାରଣ ସୈନିକମାନଙ୍କୁ ହୁକୁମ ଦିଆଗଲା । ମନ୍ତ୍ରିଙ୍କ ପରାମର୍ଶରେ, ଅଙ୍ଗାଧିପ ଭୈରବଙ୍କୁ ଆଦେଶ କଲେ ଯେ, ସେ ରତନସିଂହରଙ୍କୁ ଧରିବା ନିମନ୍ତେ ରାଜ୍ୟର ସମସ୍ତ ସେନା ନେବେ ଏବଂ ଆବଶ୍ୟକ ହେଲେ ନୂତନ ସୈନ୍ୟଦଳ ଗଠନ କରିବେ ।

ସେ ରାତି ମନ୍ତ୍ରଣା ସଭା ଭଙ୍ଗ ହେବାର କିଛି ସମୟ ପରେ, ରାଜାଙ୍କର ଜଣେ ଗୁପ୍ତଚର ଆସି ସୈନିକ ନୂତନ ପ୍ରଧାନ ସେନାପତିଙ୍କ

ନୀଳକଣ୍ଠଙ୍କୁ ଯାଇ ଜଣାଇଲା,— "ହଜୁର ଗୋଟିଏ ଭୟଙ୍କର ସମ୍ବାଦ ଦେବାକୁ ଆସିଛି । ରତନଗଡ଼ର ରାଜାଙ୍କର ଧନାଗାର ଲୁଣ୍ଠ କରିବ ।"

ଭୈରବ-- ଧନାଗାର ଲୁଣ୍ଠ ! କେବେ ?

ଭିଲ-- କେବେ ଜାଣି ନାହିଁ; କିନ୍ତୁ ରତନ ତାହାର ଦଳ ସହିତ ଏପରି ମନ୍ତ୍ରଣା କରୁଛି ।

ଭୈରବ—ହୁଃ ଏତେ ସାହସ ବନମୂଷିକଙ୍କର ! ଏତେ ସୈନ୍ୟ ଥାଉ ଥାଉ, ଭୈରବ ଥାଉ ଥାଉ ନଗରରେ ପଶି ଖଜଣାଖାନା ଲୁଣ୍ଠ କରିବ ! (କାଲି ମୋତେ ଠିକ ସମ୍ବାଦ ଆଣି ଦେବୁ ।)

ଭିଲ--- ନିଶ୍ଚିନ୍ତ ହେବ । ଖବର ଆଣିବାରେ ତ୍ରୁଟି ବା ବିଳମ୍ବ କରିବି ନାହିଁ । ଆଜି କାଲି ରତନର ଖୁବ୍ ବିଶ୍ୱାସ, ମୁଁ ତାହାର ପ୍ରକୃତ ଭକ୍ତ, ଆତ୍ମୀୟ, ବିଶ୍ୱସ୍ତ । ତା ପାଖରେ ମୁଁ ରାଜାଙ୍କର ଢେର ନିନ୍ଦା କରିଥାଏଁ ।

ଭୈରବ—ତାହାହେଲେ ତୁ ବର୍ତ୍ତମାନ ଯା— କାଲି ଅବଶ୍ୟ ଆସିବୁ । ମନେ ରଖ୍, ଠିକ୍ ସମ୍ବାଦ ଦରକାର ।

ଭିଲ— ମୁଁ ଆସି ନ ପାରିଲେ, ମୋର ବିଶ୍ୱାସୀ ଆଉ କେହି ଆସି ଆପଣଙ୍କୁ ଖବର ଦେଇଯିବ । ମୁଁ ପ୍ରାୟ ସବୁ ସମୟରେ ରତନ ଦଳରେ ରହେଁ । ବାରମ୍ବାର ଦଳ ଛାଡ଼ି ଆସିଲେ, ସେମାନେ ସନ୍ଦେହ କରି ପାରନ୍ତି । ଏଣୁ ସାବଧାନ ହେବା ଦରକାର ।

ଭୈରବ—ଅଚ୍ଛା, ସେପରି କର୍ ।

ଭିଲ ଗୁପ୍ତଚର ବିଦାୟ ନେଇ ସ୍ୱ କାର୍ଯ୍ୟରେ ଚାଲିଗଲା । ଭୈରବ ଆଉ ବିଳମ୍ବ ନ କରି ରାଜକୋଷ-ଲୁଣ୍ଠନ ଖବର ରାଜା ଓ ମନ୍ତ୍ରୀଙ୍କୁ

ଜଣାଇଲେ । ରାଜା ଓ ମନ୍ତ୍ରୀ ସ୍ତମ୍ଭିତ ! ଭୈରବ ସେମାନଙ୍କୁ ଅଭୟ ଦେଲେ ଏବଂ ସମୟୋଚିତ ସତର୍କତା ଅବଲମ୍ବନ କରିବେ ବୋଲି କହି ବିଦାୟ ନେଲେ । ସେ ନଗରର ସମସ୍ତ ସୈନ୍ୟଙ୍କୁ ଡକାଇ, ନଗର ଚତୁର୍ଦ୍ଦିଗରେ ସମଗ୍ର ରାତ୍ରି ପହରା ଦେବାକୁ ଆଦେଶ୍ଟ କଲେ । ପ୍ରଧାନ ସେନାପତିଙ୍କର ଆଦେଶରେ, ସୈନିକମାନେ ଭୋଜନାଦି ସମାପନ କରି ନଗର ବାହାରେ ଯାଇ ଜଗି ରହିଲେ । ନଗର ଉପକଣ୍ଠରେ କେତେ- ଗୋଟି ବଡ଼ ବଡ଼ ଘର ଥିଲା । ସେ ସବୁ ସୈନ୍ୟ ପାଇଁ ଉଦ୍ଦିଷ୍ଟ । ବିପଦ ବେଳେ ସୈନିକମାନେ ସେ ସମସ୍ତ ଗୃହରେ ସତର୍କ ପହରା ଦେଉ ଥାନ୍ତି । ସେ ସବୁ ଗୃହ ଖଡ୍ଗ, ଲାଠି, ଢାଲ, ଭଲ୍ଲ, ଧନୁଶର, ମୁଦ୍ଗର ଇତ୍ୟାଦି ଅସ୍ତ୍ର ଶସ୍ତ୍ରରେ ପୂର୍ଣ୍ଣ କରାଗଲା । ସୈନିକମାନେ ଘର ସବୁ ଘେରି ରହିଲେ । ବିନିଦ୍ର ରଜନୀ ଯାପନ କରିବା ସକାଶେ ସୈନ୍ୟ ପ୍ରତି ଭୈରବ- ଙ୍କର କଡ଼ା ହୁକୁମ । ରାତ୍ରି-ଜାଗରଣ—ପ୍ରଧାନତଃ ସତର୍କ ଓ ଆଶଙ୍କା- ଜଡ଼ିତ ରାତ୍ରି-ଜାଗରଣ ସହଜ ବ୍ୟାପାର ନୁହେ, ପ୍ରକୃତିର ପରାଭବ ସହଜ କଥା ନୁହେ । ରାତ୍ରିତମାମ ଭୈରବଙ୍କର କର୍କଶ ଆଦେଶ ଓ ନିଦ୍ରାଦେବୀଙ୍କର କଠୋର ପ୍ରଭାବ ମଧ୍ୟରେ ଖୁବ୍ ସଂଗ୍ରାମ ହେବାକୁ ଲାଗିଲା ।



୧୮

ଦେଖୁଁ ଦେଖୁଁ ସେହି ବିଷମ ରଜନୀ ବିଷମତର ପ୍ରଭାତରେ ପରିଣତ ହେଲା । ପୂର୍ବ ରାତ୍ରି ଭୈରବ ନିଶୀଥ ଯାଏଁ ନଗର ଭ୍ରମଣ କରି ସୈନିକମାନଙ୍କର କାର୍ଯ୍ୟ ପରିଦର୍ଶନ କରୁଥିଲେ । ଏଣୁ ସକାଳେ ତାଙ୍କ ନିଦ୍ରାଭଙ୍ଗରେ ଟିକିଏ ଡେରି ହୋଇଗଲା । ସେ ଶଯ୍ୟା ତ୍ୟାଗ କରିବାର କିଛି ସମୟ ପରେ, ଜଣେ ସୈନିକ ଅତ୍ୟନ୍ତ ଉଦ୍ବେଗରେ ଭୟକମ୍ପିତ କଳେବରରେ ଧାଇଁ ଯାଇ ଭୈରବଙ୍କୁ ଭଗ୍ନକଣ୍ଠରେ କହିଲା,— "ହଜୁର, କାଲି ରାତି ରତନ କେତେକ ଭିଲଙ୍କୁ ସଙ୍ଗେ ନେଇ ନଗର ପ୍ରାନ୍ତକୁ ଆସିଥିଲା । ଗୋଟିଏ ଘର ଆକ୍ରମଣ କରି ସବୁ ଅସ୍ତ୍ର ଶସ୍ତ୍ର ବନା ବାଧାରେ ଚୋରି କରି ନେଇଅଛି ।" ଆଉ କିଛି କହିପାରିଲା ନାହିଁ— ଭୈରବଙ୍କର ଆରକ୍ତ ଚକ୍ଷୁ ଦେଖି ତାହାର ବାକ୍‌ରୁଦ୍ଧ ହୋଇ ପଡ଼ିଲା ।

ଅସ୍ତ୍ର ଶସ୍ତ୍ର ଚୋରି କଥା କାନରେ ପଡ଼ିବା ମାତ୍ରକେ ପ୍ରଧାନ ସେନାପତି ଚମକି ପଡ଼ିଲେ । କିଛିକ୍ଷଣ ନିର୍ବାକ୍ ହୋଇ ରହିଲେ । ବିସ୍ମୟ ତାଙ୍କୁ ଅଧିକ ସମୟ ଆକ୍ରମଣ କରି ପାରିଲା ନାହିଁ । କାରଣ, ସେ ରତନ ଦସ୍ୟୁର ଏହିପରି ଅତର୍କିତ ଆକ୍ରମଣ, ଅଲକ୍ଷିତ ଲୁଣ୍ଠନ ବିଷୟ ଅନେକ ଥର ଶୁଣିଛନ୍ତି । ବିସ୍ମୟ ଶୀଘ୍ର ତାଙ୍କ ମନରୁ ଦୂର ହୋଇଗଲା— ତତ୍ପରିବର୍ତ୍ତେ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ପ୍ରତି ଭୀଷଣ କ୍ରୋଧ ଓ ସନ୍ଦେହ ତାଙ୍କ ମନ ଅଧିକାର କରି ବସିଲା । ତାଙ୍କର ସର୍ବାଙ୍ଗ ଥରିବାକୁ ଲାଗିଲା ।

ସୈନ୍ୟ ନିକଟରୁ ଅସ୍ତ୍ର ଶସ୍ତ୍ର ଚୋରି ! ଏହା ତ ସାମାନ୍ୟ କଥା ନୁହେ ! ଭୈରବଙ୍କ ମନରେ ଘୋର ସନ୍ଦେହ ଜାତ ହେଲା— ସୈନିକମାନେ କଣ ରତନ ଦଳରେ ଯୋଗ ଦେଇଛନ୍ତି ? ତାହା ନ ହେଲେ ରତନ ଅଳ୍ପ କେତେକ ଜଣ ମାତ୍ର ଲୋକଙ୍କୁ ସଙ୍ଗେ ଧରି

ଅସି ଅସ୍ତ୍ର ଗୃହରେ ନିର୍ବିଘ୍ନରେ ପ୍ରବେଶ କଲା କିପରି ? କେହି ବାଧା ଦେଲେ ନାହିଁ କାହିଁକି ? ସୈନ୍ୟ ମଧ୍ୟରେ ଅନେକ ଖଳ ଅଛନ୍ତି । ଖୁବ୍ ସମ୍ଭବ, ଏମାନେ ଶତ୍ରୁଙ୍କୁ ଗୁପ୍ତ ଭାବରେ ସାହାଯ୍ୟ କରୁଛନ୍ତି । ବର୍ତ୍ତମାନ କର୍ତ୍ତବ୍ୟ କଣ ?

ପୂର୍ବ ରାତ୍ରି ସେ ଅସ୍ତ୍ରଗୃହ ନିକଟରେ ଅଠର ଜଣ ସୈନ୍ୟଙ୍କ ସଙ୍ଗେ ଦୁଇ ଜଣ କୋଟୱାଲ ଜଗିଥିଲେ । ସେ ଦୁହିଁଙ୍କୁ ତତ୍ପର ଡ଼ାକି ଆଣିବା ସକାଶେ ଭୈରବ ବଜ୍ର-କଠୋର ସ୍ୱରରେ ସେ ସୈନିକଙ୍କୁ ଆଦେଶ କଲେ । ସେ ଆଉ କାଳ ବିଳମ୍ବ ନ କରି ଯାଇ ଗଲା, ଦୁଇ ଜଣଙ୍କୁ ଡ଼ାକି ଆଣିଲା । ଦୁହେଁ କସାଇଘର ଛେଳି ପରି ଥରି ଥରି ଭୈରବଙ୍କ ସମ୍ମୁଖରେ ଯାଇ ଠିଆ ହେଲେ । ଉଭୟେ ସେଠାରେ ପହଞ୍ଚିବା ଆଗରୁ ବିଷମ ଅନର୍ଥପାତ ଆଶଙ୍କା କରିଥିଲେ । ଭାବିଥିଲେ ଯାହା, ସତକୁ ସତ ଘଟିଲା ତାହା । ଭୈରବ କେଶରୀ-ଗର୍ଜ୍ଜନ ତୁଲ୍ୟ ଗୋଟାଏ ବିକଟ ଚିତ୍କାର କରି ସେ ଦୁହିଁଙ୍କ ଆଗରେ ଲମ୍ଫ ଦେଇ ଠିଆ ହୋଇଗଲେ ଏବଂ ସେମାନଙ୍କ କର୍ଣ୍ଣର କାଠିନ୍ୟ ପରୀକ୍ଷା କରି କରି କହିଲେ— "ସମସ୍ତେ କଣ ଶୋଇଥିଲ ? ଶତ୍ରୁ ଆସି ଅସ୍ତ୍ର ଶସ୍ତ୍ର ଲୁଟି କରି ନେଲା— ତୁମେମାନେ ତୁନି ହୋଇ ରହିଲ !"

ଲୋତକ-ବିଗଳିତ ବଦନରେ କୋଟୱାଲ୍ ଦୁହେଁ ଭୈରବଙ୍କ ପଦ ଧାରଣ କରି କ୍ଷମା ଭିକ୍ଷା କଲେ ।

ଭୈରବ— ନରକର ନୀଚ କୀଟ ତୁମେମାନେ ! ଆଜି ଏ ବିଶ୍ୱାସଘାତକତା କଲ କିଆଁ ? ଶତ୍ରୁ ସଙ୍ଗେ ଷଡ଼ଯନ୍ତ୍ର କରି କିଂବା ତାହାଠାରୁ ଧନ ନେଇ ତୁମେମାନେ ଅବଶ୍ୟ ଅସ୍ତ୍ର ଶସ୍ତ୍ର ସବୁ ବିକ୍ରି କରିଛ ।

କହୁଥିଲେ ଦୁହେଁ—'ଏଙ୍କାଙ୍କର ଉଚ୍ଛିଷ୍ଟ ଖାଇ ଆମେମାନେ ପ୍ରାଣଧାରଣ କରୁଛୁଁ, ତାଙ୍କର ଲୁଣ ଖାଇ ଆମେମାନେ ମନୁଷ୍ୟ। ଆମେମାନେ କଣ ଏପରି ନିମକହାରାମି କରି ପାରିବୁଁ ?'

ଭୈରବ ସେମାନଙ୍କର କଣ୍ଠଦେଶ ଛାଡ଼ି ଗଣ୍ଡ ଦେଶରେ ଉଗ୍ର ଚପେଟାଘାତ କରି କହିଲେ—"ତେବେ ରତନ ଅସ୍ତ୍ର ଶସ୍ତ୍ର ନେଲା କିପରି ? ପ୍ରକୃତ ଘଟଣା ଖୋଲି କହ। ମିଛ କହିଲେ ପ୍ରାଣ ଯିବ— ସାବଧାନ !"

ସେମାନଙ୍କ ମଧ୍ୟରୁ ଜଣେ ବିନୀତ ଭାବରେ ଥରଥର କଣ୍ଠରେ ଜଣାଇଲା,—'ହଜୁର, କାଲି ଅର୍ଦ୍ଧରାତ୍ରି ଯାଏଁ ଜାଗ୍ରତ ରହି ଆମେମାନେ ନିଦ୍ରାର ହାତରୁ ସମ୍ଭାଳି ନ ପାରି ତାହାର ଆଶ୍ରୟ ନେବାକୁ ବାଧ୍ୟ ହେଲୁଁ। ପରେ କଣ ଘଟିଲା ଜାଣିନାହୁଁ। ରାମ ଆଉ ଶ୍ୟାମ, ଏ ଦୁଇ ଜଣ ପାହାରା ଏ ଦୁର୍ଘଟଣା ସମ୍ବନ୍ଧରେ କିଛି ଜାଣନ୍ତି। ସେମାନଙ୍କୁ ଡକାଇ ପଚାରନ୍ତୁ— ସବୁ ବୁଝିପାରିବେ।'
ଅନ୍ୟ ଜଣେ—ଆମମାନଙ୍କୁ କ୍ଷମା କରନ୍ତୁ।

ରାମ ଓ ଶ୍ୟାମ ସେଇକ୍ଷଣି ସେଠାକୁ ଆହୂତ ହୋଇ ଆସିଲେ। ସେ ଦୁହେଁ ପୂର୍ବ ରାତ୍ରି ଅସ୍ତ୍ରଗୃହ ନିକଟରେ ଜଗି ଥିଲେ। ଅସ୍ତ୍ରଗୃହର ପ୍ରକୃତ ବିବରଣ ଦେବା କାରଣ ଭୈରବ ସେମାନଙ୍କୁ କଠୋର ଆଦେଶ କଲେ। ଶ୍ୟାମ କମ୍ପିତ ସ୍ୱରରେ କହିଲା,—"ସେନାପତି ମହୋଦୟ, ଗତ କାଲି ଅର୍ଦ୍ଧରାତ୍ରି ହେବାର କେତେକ ସମୟ ପୂର୍ବେ ଜଣେ ସ୍ତ୍ରୀ ଆଉ ପନରଜଣ ଜଙ୍ଗଲି କାଠୁରିଆ ଆମ ଅସ୍ତ୍ରଗୃହ ନିକଟରେ ଆସି କୋଳାହଳ କଲେ। ଆମେମାନେ କୋଳାହଳର କାରଣ ଜାଣିବା ପାଇଁ ଘଟଣାସ୍ଥଳକୁ ଯାଇଁଲୁଁ। ଶୁଣିଲୁଁ, ରତନ

ଶ୍ରେର ସେମାନଙ୍କୁ ଆକ୍ରମଣ କରି ସେମାନଙ୍କର ଜିନିସପତ୍ର ଜୋରରେ ଛଡ଼ାଇ ନେବାକୁ ଚେଷ୍ଟା କରୁଥିଲା । ଉତନର ଆକ୍ରମଣ କଥାଶୁଣି ଆମ ମନରେ ଚମକ ପଶିଲା । ଏଣୁ ରାତ୍ରିଜାଗରଣରେ ଅଧିକ ସତର୍କ ରହିବା ସ୍ଥିର କଲୁଁ । ସେହି ସ୍ତ୍ରୀ ଓ କାଠୁରିଆମାନଙ୍କ ଶୋଚନୀୟ ଅବସ୍ଥା ଓ କରୁଣ ଚୀତ୍କାରରେ ଆମମାନଙ୍କ ମନରେ ଦୟାର ସଂଚାର ହେଲା । ରାତିରେ ସେମାନଙ୍କର ଯତ୍ନ ନେବାକୁ ଚେଷ୍ଟା କଲୁଁ । ସ୍ତ୍ରୀ ଲୋକଟି ଅତ୍ୟନ୍ତ ଭୀତ ତ୍ରସ୍ତ ହୋଇ ରାତିଟା କଟାଇବା ନିମନ୍ତେ କିଛି ସ୍ଥାନ ପ୍ରାର୍ଥନା କଲା । ଆମେମାନେ ସରଳ ବଣ୍ୱାସୀ, ସାଧାସିଧା ଲୋକ—ସ୍ତ୍ରୀର କାତର ପ୍ରାର୍ଥନା ରକ୍ଷା କଲୁଁ, ତାହାକୁ ଓ କାଠୁରିଆମାନଙ୍କୁ ଅସ୍ତ୍ରଗୃହରେ ସ୍ଥାନ ଦେଲୁଁ । ଆମେ କୋଡ଼ିଏ ଜଣ ଲୋକ ଅସ୍ତ୍ରଗୃହ ଚତୁର୍ଦ୍ଦିଗରେ ଘେରି ରହିଲୁଁ । ଜଣକ ପରେ ଜଣେ ଘର ପିଣ୍ଡାରେ ପହରା ଦେବାକୁ ଲାଗିଲୁଁ । ଅନ୍ୟାନ୍ୟ ଅସ୍ତ୍ରଗୃହ ନିକଟରେ ମଧ୍ୟ ସିପାହୀ ଏପରି ଜଗି ରହିଥିଲେ ।

"ସେ ସ୍ତ୍ରୀ ଓ କାଠୁରିଆମାନେ ଘର ପିଣ୍ଡାରେ ଶୋଇବାକୁ କାହିଁକି ଯେ ଅନୁରୋଧ କଲେ ଆମେମାନେ କିଛି ବୁଝିପାରି ନ ଥିଲୁଁ, ଏ ବିଷୟରେ ଆମ ମନରେ ଟିକେ ମାତ୍ର ସନ୍ଦେହ ହେଲା ନାହିଁ । ଏଣୁ କୌଣସି ଆପତ୍ତି କଲୁ ନାହିଁ । ରାତିରେ ଜାଗ୍ରତ ରହି ଖୁବ୍ ସତର୍କ କଡ଼ା ପହରା ଦେବା ସକାଶେ ଅବଶ୍ୟ ଆପଣଙ୍କର ଆଦେଶ ଥିଲା । କିନ୍ତୁ ଅନିଚ୍ଛାସତ୍ତ୍ୱେ ଆପଣଙ୍କ ଆଦେଶ ପରୋକ୍ଷଭାବରେ ଅମାନ୍ୟ କରି-ବାକୁ ବାଧ୍ୟ ହୋଇ ପଡ଼ିଲୁଁ । କ୍ଷମା କରିବେ—ନିଶାର୍ଦ୍ଧର ଦେଢ଼ ଘଣ୍ଟା ପରେ ପ୍ରହରୀ ଛଡ଼ା ଆମେ ସମସ୍ତେ ଘୋର ନିଦ୍ରାରେ ଘାରି ହୋଇ ପଡ଼ିଲୁଁ । ରାତ୍ରିର ଶେଷ ଭାଗରେ ଗୋଟାଏ ଗୋଳମାଳ ଉଠିଲା, ସେଥିରେ ଆମମାନଙ୍କର ନିଦ ଭାଙ୍ଗିଗଲା । ଉଠି ଦେଖିଲୁଁ, ୪୦।୫୦

ଜଣ ଭିଲ ଅସ୍ତ୍ରଗୃହ ନିକଟରେ ଲାଠି, ଧନୁଶର ଧରି ଠିଆ ହୋଇ-ଛନ୍ତି । ଆମେମାନେ ଚିତ୍କାର କରି ଅଗ୍ରସର ହେବାକ୍ଷଣି, ସେମାନେ ଅତି ଚଞ୍ଚଳ ଧାଇଁ ପଳାଇଲେ । କେତେ ଦୂର ଗୋଡ଼ାଇ ଗଲୁଁ— ସେମାନଙ୍କୁ ଧରିବା ତେଣିକି ଥାଉ, ଆଉ ଦେଖି ପାରିଲୁ ନାହିଁ । ପରେ ଭୟ, ଲଜ୍ଜା ଓ ସନ୍ଦେହରେ ଅସ୍ତ୍ରଘର ପାହାଡକୁ ଯାଇ ଦେଖିଲୁଁ, ସେ ସ୍ତ୍ରୀ ଓ କାଠୁରିଆମାନେ ସେଠାରେ ନାହାନ୍ତି । ଆମମାନଙ୍କ ଭୟ, ଲଜ୍ଜା ଓ ସନ୍ଦେହର ମାତ୍ରା ବଢିବାକୁ ଲାଗିଲା । ଅସ୍ତ୍ରଗୃହ ଭିତରେ ପଶି ଯାହା ଦେଖିଲୁଁ, ସେଥିରେ ଆମମାନଙ୍କର ବାହ୍ୟଜ୍ଞାନ କେଉଁଆଡ଼େ ଗୁଲି-ଗଲା—କିଛିକ୍ଷଣ ନିର୍ବାକ୍, ନିଷ୍ପନ୍ଦ ହୋଇ ଠିଆ ହେଲୁଁ । ଦେଖି ବିସ୍ମିତ ହେଲୁଁ, ପ୍ରହରୀର ହସ୍ତପଦ ରଜ୍ଜୁରେ ଆବଦ୍ଧ— ଗୃହଟି ଅସ୍ତ୍ରଶସ୍ତ୍ରଶୂନ୍ୟ । ସେତେବେଳକୁ ନିକଟସ୍ଥ ଅସ୍ତ୍ରଗୃହର ସୈନିକମାନେ ସେଠାରେ ରୁଣ୍ଡ ହୋଇ ଯାଇ ଥିଲେ । ଏହା ରତ୍ନାକରର କାଣ୍ଡ—ଭିଲ ସର୍ଦ୍ଦାରର ମାୟାଜାଲ ।”

ଭୈରବ ଅଗ୍ନିଶର୍ମା ହୋଇ ଉଠିଲେ । ସେ କ୍ରୋଧର ଆଉ ସୀମା ପରିସୀମା ନାହିଁ । ସେ ମୁଖବିକୃତିର ତୁଳନା ନାହିଁ । ଭୈରବ ଏକ ଲମ୍ଫରେ ଯାଇ ଭୀମ ମୁଖରେ ଭୀଷଣ ମୁଷ୍ଟ୍ୟାଘାତ କରି ପଚାରିଲେ— ‘ସେ ଘରେ କିଛି ଆଉ ଅସ୍ତ୍ର ଶସ୍ତ୍ର ନାହିଁ ?’

ଭୀମ କାନ୍ଦି କାନ୍ଦି ଉତ୍ତର କଲା—‘ଆଜ୍ଞା, କିଛି ନାହିଁ—ରତ୍ନା ସବୁ ନେଇ ଯାଇଛି ।’

ପ୍ରଧାନ ସେନାପତିଙ୍କର କ୍ରୋଧ ବର୍ତ୍ତମାନ ସହ୍ୟସୀମା ଅତିକ୍ରମ କରି ବିଷମ ଉତ୍ପାତ ଆରମ୍ଭ କଲା । ଭୀମର ଦନ୍ତଶ୍ରେଣୀରୁ ରକ୍ତଧାରା ବହିବାକୁ ଲାଗିଲା । ଭୈରବଙ୍କ ପ୍ରଚଣ୍ଡ ପଦାଘାତରେ ଗ୍ରାମ ଭୂତଳଶାୟୀ

ହେଲା । କନ୍‌ଷ୍ଟେବଲ୍‌ମାନେ ଥରକୁ ଥର ବାରମ୍ବାର 'ହଜୁର' ସମ୍ବୋଧନ କରି ପ୍ରଣାମ କରିବାକୁ ଲାଗିଲେ । ସେମାନଙ୍କର ବିବିଧ ବିନୀତ ବାକ୍ୟରେ ଭୈରବଙ୍କର କ୍ରୋଧଦଗ୍ଧ ହୃଦୟ କେତେକ ପରିମାଣରେ ପ୍ରକୃତିସ୍ଥ ହେଲା । ଜଣେ କନ୍‌ଷ୍ଟେବଲ୍ କହିଲା—'ହଜୁର, ଆମମାନଙ୍କର କିଛି ଅପରାଧ ନାହିଁ । ସମସ୍ତେ ଜୋର ନିଦରେ ଶୋଇ ପଡ଼ିଥିଲୁଁ । ଏ ସୁଯୋଗ ଦେଖି ରତନ ଅସ୍ତ୍ରଶସ୍ତ୍ର ସବୁ ଲୁଟି କରି ନେଇଛି ।'

ଭୈରବ—ରତନର ଲୋକେ ପ୍ରହରୀର ହାତ ଗୋଡ଼ ବାନ୍ଧିବାବେଳେ ସେ ଡକା ହକର ପକାଇ ତୁମମାନଙ୍କୁ ଉଠାଇଲା ନାହିଁ କାହିଁକି ?

ରାମ— ଆଜ୍ଞା, ଖଳମାନେ ତାହାର ଭୁଣ୍ଡରେ ଲୁଗା ଭରିଦେଇ କରି ଦେବାରୁ ସେ ଆଉ ରଡ଼ି ଛାଡ଼ି ପାରିଲା ନାହିଁ । ଆମେମାନେ ଅସ୍ତ୍ରାଗାର ଭିତରକୁ ଯିବାବେଳକୁ ପ୍ରହରୀ ମୂର୍ଚ୍ଛିତ ।

ଭୈରବ—ଦେଖନ୍ତୁ, ବିଦ୍ରୋହୀ ରତନ ପ୍ରତି ସହାନୁଭୂତି ଦେଖାଇଛି ।

କନ୍‌ଷ୍ଟେବଲ୍—ହଜୁର, ଏପରି କିଛି ଷଡ଼ଯନ୍ତ୍ର ଆମମାନଙ୍କର ନାହିଁ । ଆମ ନିଦ୍ରାହିଁ ଏ ସବୁ ଅନର୍ଥର ମୂଳ । କ୍ଷମା କରନ୍ତୁ ।

ପ୍ରଧାନ ସେନାପତି ସେମାନଙ୍କୁ ବିସ୍ତର ଭିରସ୍କାର ଧିକ୍କାର ସହ ବିଦାୟ କରି ପ୍ରାତଃକୃତ୍ୟ ସାରିଲେ । ପରେ ଯାଇ ଅଙ୍ଗଧ୍ୱଜ ଓ ପ୍ରଧାନ ମନ୍ତ୍ରିଙ୍କୁ ଅସ୍ତ୍ରଶସ୍ତ୍ରଲୁଣ୍ଠନ ସମ୍ବାଦ ଓ ତାହାର କାରଣ ଜଣାଇଲେ । ରାଜା ଓ ମନ୍ତ୍ରୀ କିଛି ସମୟ ସ୍ତମ୍ଭିତ ହୋଇ ବସିଲେ । ରାଜାଙ୍କର କ୍ରୋଧ ଚରମ ସୀମାରେ ଉପନୀତ ହେଲା । ସେ ଦନ୍ତରେ ଦନ୍ତ ନିଷ୍ପେଷିତ କରି କହିଲେ—"ସେଇ ବିଶ୍ୱାସଘାତକ ସୈନିକମାନଙ୍କୁ ଏଇକ୍ଷଣି ହତ୍ୟା କର, ଭୈରବ । ଏମାନେ ଆମର ଲୁଣଖାଇ ରତନର କାମ କରୁଛନ୍ତି ।" ପ୍ରଧାନ ମନ୍ତ୍ରୀ ଧୀର ସ୍ଥିର ଭାବରେ ଗମ୍ଭୀର କଣ୍ଠରେ

ରାଜାଙ୍କୁ କହିଲେ—'କ୍ରୋଧ ଶାନ୍ତ କରନ୍ତୁ ମହାରାଜ ! ପ୍ରାଣଦଣ୍ଡ ଆଜ୍ଞା ଦିଅନ୍ତୁ ନାହିଁ । ସୈନିକମାନଙ୍କୁ ହତ୍ୟା କଲେ ରାଜ୍ୟର ସୈନ୍ୟ ମଧ୍ୟରେ ନିଶ୍ଚୟ ଶୃଙ୍ଖଳା ଉପସ୍ଥିତ ହେବ—ଆମର ବର୍ତ୍ତମାନ କାର୍ଯ୍ୟରେ ଗୁରୁ ଆଘାତ ଲାଗିବ ।'

ଭୈରବ—ମହାରାଜ, ମନ୍ତ୍ରୀ ଠିକ୍ କହୁଛନ୍ତି । ରତନଙ୍କୁ ଧରି ଆଣିବା ପରେ, ଏମାନଙ୍କୁ ଉପଯୁକ୍ତ ଶାସ୍ତି ଦିଆଯାଉ ।

ରାଜା ଆଦେଶ ପ୍ରତ୍ୟାହାର କଲେ । ପରେ କିଛି ସମୟ ମଳିନ ବଦନରେ ମୌନଧାରଣ କରି ଭାବିଲେ—'ରାଜଶକ୍ତିକୁ ସାମାନ୍ୟ ଜଣେ ଭୀଲ ତସ୍କର ପରାସ୍ତ କରି ପକାଉଛି । ରାଜ୍ୟରେ ସୁଶିକ୍ଷିତ, ସାହସୀ ସୈନ୍ୟ ଅଛନ୍ତି, ଯଥେଷ୍ଟ ଧନବ୍ୟୟ, କଳ କୌଶଳ ପ୍ରୟୋଗ ହେଲାଣି, ଅଥଚ ରତନ ଧରା ପଡ଼ୁ ନାହିଁ । ବଡ଼ ଲଜ୍ଜାର କଥା ।' ଏ ଚିନ୍ତାରେ ରାଜା ଏକାବେଳକେ ବିକ୍ଷିପ୍ତ, ବିଚଳିତ ହୋଇ ପଡ଼ିଲେ । ପରେ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ —'ରତନର ଦୌରାତ୍ମ୍ୟ ଦିନୁଦିନ ବୃଦ୍ଧି ପାଇ ଜଗତ ଆଗରେ ଆମ ରାଜ୍ୟର ଦୁର୍ବଳତା ଘୋଷଣା —"

ଭୈରବ ଅଗଂଧ୍ୱଜଙ୍କ କଥାରେ ହଠାତ୍ ବାଧା ଦେଇ ଷ୍ଟୀତ ବକ୍ଷରେ ଗୁରୁ ଗମ୍ଭୀର ସ୍ୱରରେ କହିଲେ— "ହତାଶ ହୁଅନ୍ତୁ ନା ମହାରାଜ ! ଅଜ ରାତ ରତନକୁ ନିଶ୍ଚୟ ବାନ୍ଧି ଆଣିବ । ଏହା କରି ନ ପାରିଲେ ଶପଥ କରି କହୁଛି, ମୁଁ ସେନାପତିପଦ ତ୍ୟାଗ କରି ଏ ରାଜ୍ୟରୁ ଚାଲିଯିବି । ଅଧୀର ହୁଅନ୍ତୁ ନାହିଁ ।"

ରାଜା ଆଶ୍ୱସ୍ତ ହେଲେ । ସେ ଓ ମନ୍ତ୍ରୀ ଭୈରବଙ୍କ ଭୀମ ପ୍ରତିଜ୍ଞା ଦେଖି ଭାରି ପ୍ରଶଂସା କଲେ । ସ୍ଥିର ହେଲା, ସେ ଦିନ ସନ୍ଧ୍ୟା ସମୟରେ ଭୈରବ ବିଶାଳ ସୈନ୍ୟ ଧରି ଭୀଲ ପଲ୍ଲୀପ୍ରତି ଅଗ୍ରସର

ହେବେ । ସନ୍ଧ୍ୟା ଆଗରୁ ରାଜ୍ୟର ସମସ୍ତ ସୈନିକଙ୍କୁ ନଗର-ଉପକଣ୍ଠରେ ରୁଣ୍ଡ ହେବାକୁ ଆଦେଶ ଦିଆଗଲା ।

ରାଜ୍ୟର ବୀରାଗ୍ରଗଣ୍ୟ ବୀରବର ନିହତ । ପ୍ରସିଦ୍ଧ ଯୋଦ୍ଧା ମଦନ ହସ୍ତଗତ । ନଗରର ଅନେକ ଅସ୍ତ୍ରଶସ୍ତ୍ର କରଗତ । ପ୍ରଜାମାନଙ୍କ ପ୍ରାଣରେ ଆତଙ୍କ ଉପସ୍ଥିତ । ସୁତରାଂ ରତ୍ନାକର ଅଜ ଗମ୍ଭୀର ଆନନ୍ଦରେ ପରିପ୍ଲୁତ, ବୀରମଦରେ ଉନ୍ମତ୍ତ । ଅଭିରକ୍ତ ଗର୍ବରେ ସେ ଧରାକୁ ସରା ଜ୍ଞାନ କଲେ ।

ଅଜ ଭିଲ ସର୍ଦାରଙ୍କ ଆନନ୍ଦର ଦିନ । ସେ ଭିଲପଲ୍ଲୀରେ ଗୋଟିଏ ବିପୁଳ ନିଶାକାଳୀନ ସୁରାପାନୋତ୍ସବର ଆୟୋଜନ କଲେ । ସନ୍ଧ୍ୟା ପହଞ୍ଚିବା ମାତ୍ରକେ ରତ୍ନାକର ଓ ପଲ୍ଲୀର ଭିଲମାନେ ମାଂସା ଭୋଜନ ଓ ସୁରାପାନରେ ପ୍ରବୃତ୍ତ ହେଲେ । ମଶାଲ ଆଲୋକରେ ପଲ୍ଲୀ ଚତୁଃପାର୍ଶ୍ୱସ୍ଥ ବନଭାଗ ଆଲୋକିତ ହେଲା । ସୁରାପାନମତ୍ତ ଭିଲମାନଙ୍କର ଚୀତ୍କାର ଓ ସଂଗୀତଧ୍ୱନିରେ ପଲ୍ଲୀ ମୁଖରିତ ହୋଇ ଉଠିଲା, ଅରଣ୍ୟ ପ୍ରଦେଶର ନୈଶ ସମୀରମଣ୍ଡଳ ଘୂର୍ଣ୍ଣି ହେବାକୁ ଲାଗିଲା । ଭିଲମାନେ ନାନା ପ୍ରକାର ଆମୋଦ ପ୍ରମୋଦ କ୍ରୀଡ଼ା କୌତୁକରେ ବିଭୋର ହୋଇ ପଡ଼ିଲେ । ସେମାନେ ଏତେ ଅଧିକ ପରିମାଣରେ ମଦ୍ୟପାନ କଲେ ଯେ, ସେମାନଙ୍କର ବାହ୍ୟଜ୍ଞାନ ଲୋପ ହୋଇଗଲା ।

ଏ ଉତ୍ସବରେ ରତ୍ନାକରଙ୍କ ଆନନ୍ଦର ଆଉ ସୀମା ନାହିଁ । ସେ କେତେବେଳେ ସୁରାମତ୍ତ ଭିଲମାନଙ୍କ ନିକଟରେ, କେତେବେଳେ ବା ମାତଙ୍ଗୀ ଓ ତାହାର ପରିଚାରିକାଦଳ ସହିତ ବିବିଧ ରଙ୍ଗରହସ୍ୟ, କୌତୁକ-କଥୋପକଥନରେ ନିଜକୁ ନିୟୋଜିତ କରିବାକୁ ଲାଗିଲେ । ସେ ମଶାଲହସ୍ତରେ ମାତଙ୍ଗୀ ସଙ୍ଗେ ତାଙ୍କ ସୁନ୍ଦର ଭୂଗର୍ଭ-କକ୍ଷକୁ ଓହ୍ଲାଇଲେ । ସେଠାରେ ଅଙ୍ଗଧ୍ୱଜଙ୍କର ସେନାପତି ମଦନ ବନ୍ଦୀ ହୋଇ

ଥିବା କଥା ଆଗେ କହା ଯାଇଅଛି । ରତ୍ନାକର ମଦନଙ୍କ ନିକଟକୁ ଯାଇ ହସହସ ମୁଖରେ କହିଲେ—'ସେନାପତି ! ବଡ଼ ଦୁଃଖର କଥା, ତୁମର ଆଶା ଅପୂର୍ଣ୍ଣ ରହିଗଲା । ଯାହା କଲେ ତୁମ ମନୋରଥ ସିଦ୍ଧ ହେବ, ଆଶା ପୂର୍ଣ୍ଣ ହେବ, ସେ କାର୍ଯ୍ୟ କରିବାକୁ ମୁଁ ବର୍ତ୍ତମାନ ଏଠାକୁ ଆସିଛି । ତୁମକୁ ବନ୍ଧନମୁକ୍ତ କରି ଦେଉଛି । ମୋତେ ଶୃଙ୍ଖଳାବଦ୍ଧ କରି ରାଜାଙ୍କ-ଠାକୁ ନେଇ ଯାଅ ।'

କ୍ଷୁଧିତ କ୍ରୁଦ୍ଧ ସିଂହ ତୁଲ୍ୟ ମଦନ ଲାଲ ଚକ୍ଷୁରେ ରତ୍ନାକରଙ୍କୁ ନିରୀକ୍ଷଣ କରି କହିଲେ—"ପରିହାସ ଶତ୍ରୁ ପକ୍ଷରେ ଶୋଭନୀୟ ନୁହେ । ଶତ୍ରୁ ସଙ୍ଗେ ଲଢ଼ାଇ କରି ପ୍ରାଣ ବିସର୍ଜନ କରିବା ବରଂ ଶ୍ରେୟସ୍କର, କିନ୍ତୁ ଶତ୍ରୁହାତରେ ବନ୍ଦୀ ରହିବା ଯାତନାଜନକ । ଏଣୁ କହେଁ, ମୋର ବନ୍ଧନମୋଚନ କର୍, ମୋ ହାତରେ ଖଣ୍ଡିଏ ତରବାରି ଦେ । ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରାଣ ହରାଇଲେ ନିଜକୁ ଭାଗ୍ୟବାନ୍ ମନେ କରିବି । ଯୁଦ୍ଧାହ୍ୱାନରେ ପ୍ରକୃତ ଶତ୍ରୁର କାର୍ଯ୍ୟ କର୍ ।"

ରତ୍ନାକର—ପ୍ରକୃତ ଶତ୍ରୁର କାମ କରି ସାରିଛି, ତେବେ ବର୍ତ୍ତମାନ ମୁଁ ଆତ୍ମସମର୍ପଣ କରିବାକୁ ଆସିଛି । ମୋତେ ବାନ୍ଧି ନେଇ ରାଜ୍ୟ ରକ୍ଷା କରିବୁ ନାହିଁ ? ରାଜାଠାରୁ ପୁରସ୍କାର ପାଇବୁ ନାହିଁ ?

ମଦନ:— ବାଗ୍‌ଲତା ସୁରାପାନର ନିତ୍ୟ ସହଚର—ପ୍ରଲାପ ପାଗଳର ଗର୍ବର ଛନିସ ।

ରତ୍ନାକର—ହାଃ ହାଃ ହାଃ ହାଃ ଦେଖୁଛି, ରାଜ୍ୟରକ୍ଷା ଓ ପୁରସ୍କାର-ଗ୍ରହଣ ତୋର ଅଭିପ୍ରେତ ନୁହେ । ଏଠାରେ ତୁ ଚିରଦିନ ରହିବାକୁ ଭଲ ପାଉ । ବେଶ୍, ରହ—ଆପତ୍ତି ନାହିଁ । ତେବେ ଆଉ ଗୋଟିଏ ପ୍ରସ୍ତାବ । ପତ୍ନୀ-ବିରହ ତୋ ମନରେ

ଘୋର ବେଦନା ଦେଉଛି । ତୋ ସ୍ତ୍ରୀକୁ ଏଠାକୁ ନେଇ ଆସିବ ? ତାହାକୁ ପ୍ରଭିମୁହୂର୍ତ୍ତ ଏଠାରେ ଦେଖି ସୁଖୀ ହେବୁ—ବନ୍ଧନୀ ପତ୍ନୀ ବନ୍ଦୀ ପତିର କୋଳରେ ବସି ସୁଖଲାଭ କରିବ ।

ମଦନ:— କାହା ଆଗରେ ଏ କଥା କହୁଚୁ ଜାଣିଚୁ ରତନ ?

ରତ୍ନାକର—ଜାଣିଛି, ବେଶ୍ ଜାଣିଛି ମଦନ ! ରାଜ୍ୟର ଭୀରୁ ସେନାପତି, ମିତ ପ୍ରଜା, ରତନର ଉଚ୍ଛିଷ୍ଟଭୋଜୀ ମଦନ ଆଗରେ ରତନ-ସିଂହ ଏ କଥା କହୁଛି ।

ମଦନ:— କେଉଁ ମୁଖରେ ତୁ ନିଜକୁ ବୀର ବୋଲି ପରିଚୟ ଦେଉଛୁ, ବୁଝିପାରୁ ନାହିଁ । ଯାହାର ଜୀବନ ବୀରତ୍ୱରେ ଗଠିତ, ଆଚରଣ ବୀରତ୍ୱରେ ପୁଷ୍ଟ, ସେ ପ୍ରକୃତ ବୀର । ମୁଁ ଅନେକ ବୀରଙ୍କୁ ଦେଖିଛି; କିନ୍ତୁ ତୋ ଭଳି ବୀରତ୍ୱ-ହୀନ ବୀରକୁ କେଉଁଠାରେ ଦେଖି ନାହିଁ ।

ରତ୍ନାକର—ବୀରତ୍ୱ-ଭୂଷିତ ବୀରକୁ ବୀରତ୍ୱହୀନ ବୀର ହାତରେ ଏପରି ବନ୍ଦୀ ହେବାର କେଉଁଠାରେ ଦେଖିଛୁ ?

ମଦନ:— କପଟବେଶରେ ଭୁଲାଇ ମୋତେ ଏଠାକୁ ଆଣିଛୁ । ପ୍ରତାରଣା ବୀରର ଧର୍ମ ନୁହେ ।

ରତ୍ନାକର:— ତୋ କଥାରେ ନ ହସି ରହି ହେଉ ନାହିଁ । ଯାହାର ଜୀବନ ରାଜନୀତିରେ ଗଠିତ, କାର୍ଯ୍ୟକଳାପ ରାଜନୀତିରେ ଚାଳିତ, ସେ ପ୍ରକୃତ ରାଜପୁରୁଷ । ମୁଁ ଅନେକ ରାଜ-ପୁରୁଷଙ୍କୁ ଦେଖିଛି; କିନ୍ତୁ ତୋ ଭଳି ରାଜନୀତିଜ୍ଞାନହୀନ ରାଜପୁରୁଷକୁ କେଉଁଠାରେ ଦେଖି ନାହିଁ । ତୁ ପ୍ରକୃତ

ରାଜପୁରୁଷ, ପ୍ରକୃତ ସେନାପତି ହୋଇଥିଲେ ବୁଝିଥାନ୍ତ
ଯେ, ପ୍ରତାରଣା ରାଜନୀତିର ପ୍ରଧାନ ଉପାଦାନ—ମାୟା
କପଟ, ଛଳ କୌଶଳ ରାଜପୁରୁଷର ଶ୍ରେଷ୍ଠ ଆଭରଣ ।
ରତନ କେବଳ ଚୋର ନୁହେ—ରାଜନୀତିଜ୍ଞ ମଧ୍ୟ ।

ଏହା କହି ରତ୍ନାକର ମାତଙ୍ଗୀ ସହ ସେ କକ୍ଷ ତ୍ୟାଗ କରି ଉପରକୁ ଉଠିଲେ ।

ଏଣେ ଭୈରବ ବୃହତ୍ ସୈନ୍ୟ ସଙ୍ଗେ ଧରି ସନ୍ଧ୍ୟା ସମୟରେ ଅରଣ୍ୟରେ ପ୍ରବେଶ କଲେ । ନଶୀଥ ହେବାକୁ ଆଉ ଅଳ୍ପ ସମୟ ବାକି ଅଛି—ସେତେବେଳେ ଭୈରବଙ୍କ ସୈନ୍ୟ କ୍ରମଶଃ ଅତି କୌଶଳ ସହକାରେ ରତନପଲ୍ଲୀର ନିକଟବର୍ତ୍ତୀ ହେଲେ । ଦେଖିଲେ, ପଲ୍ଲୀର କେତେ ଦୂରରେ କୋଡ଼ିଏ ପଚିଶ ଜଣ ଅତିସୁରାମତ୍ତ ଭିଲ ଚୈତନ୍ୟ ହରାଇ ପଡ଼ିଛନ୍ତି । ଭୈରବଙ୍କ ଇଙ୍ଗିତରେ କେତେକ ସୈନିକ ଧୀରେ ଧୀରେ ଛପି ଛପି ଯାଇ ବାହ୍ୟଜ୍ଞାନଶୂନ୍ୟ ଭିଲମାନଙ୍କୁ ଆକ୍ରମଣ ଓ ସଂହାର କଲେ । ସେମାନଙ୍କର ମୃତ ଦେହ ସବୁ ଏଣେ ତେଣେ ନିକ୍ଷିପ୍ତ ହେଲା ।

ସୈନ୍ୟ ମଧ୍ୟରେ ଅନେକ ଭିଲ ଥିବା କଥା କହାଯାଇଅଛି । ସେମାନେ ରତନଦଳର ଗୁପ୍ତ କାର୍ଯ୍ୟପ୍ରଣାଳୀ, ସଙ୍କେତ ଇତ୍ୟାଦି ଭଲ କରି ଜାଣିଥିଲେ । କେତେକ ଜଣ ସୈନିକ ସୁରାମତ୍ତ ଭିଲଦଳ ବେଶରେ ସେଠାରେ ବସିଲେ, ଅବଶିଷ୍ଟ ସୈନ୍ୟ ଲୁଚି ରହିଲେ । ରତ୍ନାକରଙ୍କ ଅନୁଚରମାନେ ବନରେ ବିଚରଣ କରିବା ବେଳେ ଗୋଟିଏ ଗୋଟିଏ ବଂଶୀ-ଭେରୀ ସଙ୍ଗେ ଧରି ଯାଉଥିଲେ । ଆକସ୍ମିକ ବିପଦାଶଙ୍କା ହେଲେ ସେମାନେ ସେହି ଭେରୀ ବଜାଇ ସର୍ଦ୍ଦାରଙ୍କୁ ଏବଂ

ଅନ୍ୟ ଭିଲମାନଙ୍କୁ ତାହା ଜଣାନ୍ତୁ । ସୈନିକମାନେ ଘନ ଘନ ଭେରୀ ବାଦନ କରିବାକୁ ଲାଗିଲେ ।

ରତ୍ନାକର ସେତେବେଳେ ଗୃହରେ ମାତଙ୍ଗୀ ନିକଟରେ ଉପବିଷ୍ଟ । ଶିଙ୍ଗା ଧ୍ୱନି କାନରେ ପଡ଼ିବା କ୍ଷଣି ସେ ଚମକି ପଡ଼ିଲେ । ବୁଝିଲେ, ତାଙ୍କ ଅନୁଚରମାନଙ୍କ ଉପରେ କୌଣସି ବିପଦ ପଡ଼ିଛି । ଭେରୀ-ନିନାଦର ବିରାମ ନାହିଁ—ପୁନଃ ପୁନଃ ଶୁଣାଗଲା । ରତ୍ନାକର ଭିଲ-ମାନଙ୍କର ସାହାଯ୍ୟାର୍ଥେ ଯିବାକୁ ପ୍ରସ୍ତୁତ ହେଲେ । ମାତଙ୍ଗୀ ଉଦ୍‌ବିଗ୍ନ କଣ୍ଠରେ କହିଲା—'ଅର୍ଦ୍ଧରାତ୍ରି ସମୟ, ବିପଦ ଆସନ୍ନ—ଏକାକୀ ଯାଅ ନାହିଁ । କେତେକ ଜଣ ଅନୁଚରଙ୍କୁ ସଙ୍ଗେ ନିଅ ।'

ରତ୍ନାକର:—ଉମାଜୀଙ୍କ କନ୍ୟା, ରତ୍ନାକରର ପତ୍ନୀ ମୁଖରୁ ଆଜି ଏ କଣ ନୂଆ କଥା ଶୁଣୁଛି ! ଭୟ ହେଉଛି ସୁନ୍ଦରୀ ?

ମାତଙ୍ଗୀ:—ନା, ଭୟ କରୁ ନାହିଁ । ବିପଦବେଳେ କେତେକ ଜଣଙ୍କୁ ସଙ୍ଗେ ନେଇଯିବା ଉଚିତ ବୋଲି କହୁଛି ।

ରତ୍ନାକର:—ଆମ ଲୋକେ ତ ସେଇଠି ଅଛନ୍ତି । ଆଗେ ମୁଁ ଯାଏଁ । ଦରକାର ହେଲେ ସଙ୍କେତ ଦେବି—ଆଉ କେତେକ ଜଣ ଲୋକ ଯିବେ ।

ମାତଙ୍ଗୀ:—ଯାଅ ସ୍ୱାମୀ, ଭୟ ନାହିଁ । ମନେ କର, ମୁଁ ସବୁବେଳେ, କାୟାସଙ୍ଗେ ଛାୟାଭଳି, ତୁମ ନିକଟରେ ଅଛି । ମନେ କର—ଯୁଦ୍ଧଭୂମି ତୁମର କେଳି-ମନ୍ଦିର, ଅର୍ଘ୍ୟ-ଶୋଣିତ କୁଙ୍କୁମ-ଦାଗ । ମୋର ଭୁଜଲତା ତୁମର କଣ୍ଠହାର, ମୋର ଶାଣିତ ଶାଣିତ ତରବାରି । ଶତ୍ରୁସୈନ୍ୟଙ୍କୁ ମୋର ସପତ୍ନୀବୃନ୍ଦ ମନେ କର—ଉନ୍ମୁକ୍ତ ଆକାଶକୁ ତୁମର ରାଜଛତ୍ର, ପର୍ବତକୁ

ରାଜଦଣ୍ଡ ମନେ କର । ବନ ନଦୀ ଭୂମି ପ୍ରମୋଦ-ଗୃହର ଚନ୍ଦ୍ରାବଳ । ଧୈର୍ଯ୍ୟ ଧର ଯାଅ ।

ରତ୍ନାକର ପ୍ରସନ୍ନ ବଦନରେ ମାତଙ୍ଗୀଙ୍କୁ ନିଜ ବକ୍ଷକୁ ଟାଣିନେଇ ମୁଖ-ଚୁମ୍ବନ କଲେ । ପରେ ଅତି ଉଦ୍‌ବେଗ ସହ ଘଟନା ସ୍ଥଳକୁ ଯାଇଁ ଗଲେ । ଦେଖିଲେ ଦୁଇ ତିନି ଜଣଙ୍କ ଭିନ୍ନ ସମସ୍ତେ ଅର୍ଦ୍ଧଶାୟିତା, ରତ୍ନାକର ବିସ୍ମିତ ହେଲେ । ପରେ ନିକଟକୁ ଯାଇ ଭାବିଲେ, ସୁରାମତ୍ତ ଅନୁଚରଦଳ ବାହ୍ୟଜ୍ଞାନରହିତ । ସେତେବେଳେ ଭୈରବଙ୍କ ସୈନିକ-ମାନେ ହଠାତ୍ ଆସି ରତ୍ନାକରଙ୍କୁ ଜୋରରେ ଚଢ଼ି ଧରି ଶୃଙ୍ଖଳାବଦ୍ଧ କରି ଦେଲେ । ଭୈରବ ରତ୍ନାକରଙ୍କୁ ନିଜର ପରିଚୟ ଦେଇ, ତାଙ୍କ ଆଗମନର ଉଦ୍ଦେଶ୍ୟ ବୁଝାଇ କହିଲେ ଯେ, ରତ୍ନାକରଙ୍କର ଆଉ ନିସ୍ତାର ନାହିଁ । ଶୃଙ୍ଖଳାବଦ୍ଧ ହେବାବେଳେ ରତ୍ନାକର ନିଜ ପଦ ଓ ଭୁଜ ଦ୍ୱାରା ଏପରି ପ୍ରବଳ ଭାବରେ ଧକ୍କା ଦେଲେ ଯେ, ସୈନିକମାନେ ଏଣେ ତେଣେ ବିକ୍ଷିପ୍ତ ହୋଇ ପଡ଼ିଲେ । ତେବେ କେତେ ବଳବାନ୍ ହେଲେହେଁ, ଏତେ ସୈନ୍ୟ ଆଗରେ ଜଣକର ଶକ୍ତି ବା କି ଛାର ! ରତ୍ନାକର ତ ଭୟ କି ଜିନିଷ ଆଦୌ ଜାଣନ୍ତି ନାହିଁ—ସେ ଭୀତତ୍ରସ୍ତ ହେଲେ ନାହିଁ । କିନ୍ତୁ ଲଜ୍ଜା ଓ ଅପମାନରେ ତାଙ୍କ ସବଳ ହୃଦୟ ଅଭିଭୂତ ହୋଇଗଲା । ଭୈରବଙ୍କ ସୈନ୍ୟଦଳ ରତ୍ନାକରଙ୍କୁ ରାଜ-ଧାନୀକୁ ଟାଣି ନେଲେ ।

---

୧୯

ରତ୍ନାକରଙ୍କ ପ୍ରସ୍ଥାନ ପରେ, ମାତଙ୍ଗୀର ମନରେ କାହିଁକି କେଜାଣି ଅଧିକ ଅଶଙ୍କା ଜାତ ହେଲା । ସେ କିଛିକ୍ଷଣ ରହି ନ ପାରି, ରତ୍ନାକରଙ୍କ ପଛେ ପଛେ ଜଣେ ସେବକଙ୍କୁ ପଠାଇଲା । ଘଟନା ସ୍ଥଳରେ ଭିଲ ସେବକ ପହଞ୍ଚିଲାବେଳକୁ ରତ୍ନାକର ଶୃଙ୍ଖଳାବଦ୍ଧ ହୋଇ ଯାଇଥିଲେ । ରାଜ-ସୈନ୍ୟର ମଶାଲ ଆଲୋକରେ ସର୍ଦ୍ଦାରଙ୍କର ଆକସ୍ମିକ ବନ୍ଧନ ଦୃଶ୍ୟ ଦେଖି ଭିଲ ସେବକ ଚମକି ପଡ଼ିଲା—ବିହ୍ୱଳଚିତ୍ତରେ ପଲ୍ଲୀକୁ ବାହୁଡ଼ି ଉତ୍କଣ୍ଠିତା ମାତଙ୍ଗୀକୁ ଏ ଦୁଃସମ୍ବାଦ ଜଣାଇଲା । ମାତଙ୍ଗୀ ଆଗରୁ ଅନିଷ୍ଟ ଆଶଙ୍କା କରିଥିଲା; ଅତଏବ ଏ ଦାରୁଣ ସମ୍ବାଦରେ ସ୍ତମ୍ଭିତ ହେଲା ନାହିଁ । ସେ ଦୁଃଖ ଦମନ କରି ହୃଦୟରେ ଅପୂର୍ବ ସାହସ ସଂଗ୍ରହ କରି, ରତ୍ନାକରଙ୍କ ଅଶୁ ଉଦ୍ଧାରର ସମୟୋଚିତ ଉପାୟ ଅବଲମ୍ବନ କରିବାକୁ ଦୃଢ଼ସଂକଳ୍ପ ହୋଇ ଉଠିଲା । ଦେଖୁଁ ଦେଖୁଁ ଏ ଖବର ଭିଲ ପଲ୍ଲୀମାନଙ୍କରେ ରାଷ୍ଟ୍ର ହୋଇଗଲା । ଭିଲମାନେ ଉତ୍ତେଜିତ ହୋଇ ଉଠିଲେ ।

ଭୈରବଙ୍କ ସୈନ୍ୟ ରତ୍ନାକରଙ୍କୁ ଧରି ନଗରରେ ଉପନୀତ ହେବାବେଳେ ପ୍ରଭାତ ହେବାକୁ ଆଉ ଏକ ପ୍ରହର ମାତ୍ର ବାକି ଥିଲା । ସୈନ୍ୟର ଆହ୍ଲାଦ-କୋଳାହଳରେ ନଗରବାସିଙ୍କର ନିଦ୍ରା ଭଗ୍ନ ହେଲା । ରାଜ୍ୟର ଦୁର୍ଦ୍ଦାନ୍ତ ଦସ୍ୟୁ ଧରା ପଡ଼ିଛି—ନଗରବାସିଙ୍କ ମଧ୍ୟରୁ ଘନ ଘନ ଜୟଧ୍ୱନି ଉଠିବାକୁ ଲାଗିଲା । ସମସ୍ତେ ଆଶ୍ୱସ୍ତ, ଆନନ୍ଦରେ ଉନ୍ମତ୍ତ । ପୂର୍ବ ରାତ୍ରି ଉତ୍କଣ୍ଠ ଉଦ୍‌ବେଗରେ ଅର୍ଦ୍ଧାଙ୍ଗିନୀଙ୍କର ନିଦ୍ରା ହୋଇ ପାରି ନ ଥିଲା । ଶୃଙ୍ଖଳାବଦ୍ଧ ରତ୍ନାକରଙ୍କୁ ଦେଖି ଅତିଶୟ ଆହ୍ଲାଦ, ଆଶାସନାରେ ରାଜା ପୂର୍ବ ରାତ୍ରିର ଅନିଦ୍ରା-କ୍ଲେଶ, ମନୋବେଦନା ଏକାବେଳକେ ବିସ୍ମୃତ ହୋଇଗଲେ । ରାଜା ଭୈରବଙ୍କୁ ଆନନ୍ଦରେ ବାରମ୍ବାର ଆଲିଙ୍ଗନ କରିବାକୁ ଲାଗିଲେ । ରାଜଭବନ-ସମ୍ମୁଖସ୍ଥ ବିସ୍ତୃତ

ପ୍ରାଙ୍ଗଣରେ ସମସ୍ତ କର୍ମଗୃହୀ ସମବେତ ହେଲେ । ରାଜା ଓ ମନ୍ତ୍ରିମଣ୍ଡଳୀ ଭୈରବଙ୍କ ଅମିତ ଶକ୍ତି, ସାହସକୁ ଧନ୍ୟ ଧନ୍ୟ କଲେ । ସମସ୍ତେ ତାଙ୍କର ଚତୁରତା ଓ ଉପସ୍ଥିତ ବୁଦ୍ଧିରେ ମୁଗ୍ଧ, ଚକିତ ହୋଇଗଲେ ।

ରତନଗଡ଼ରକୁ କିପରି ଧରି ଆଣିଲେ ଭୈରବ ତହିଁର ବିସ୍ତୃତ ବିବରଣ ରାଜାଙ୍କୁ ଏବଂ ସମବେତ ଅନ୍ୟ ଲୋକଙ୍କୁ ଶୁଣାଇଲେ । କହିଲେ—'ରତନକୁ ଧରି ଆଣି ବନ୍ଦୀ ବା ସଂହାର କରିବା ଆମର ପ୍ରଧାନ ସଙ୍କଳ୍ପ । ଆମେମାନେ ଜାଣୁଁ, ରତନ ଆମର ହସ୍ତଗତ ହେଲେ ତାହାର ଭିଲ ଅନୁଚରମାନେ ସହଜରେ ଆମର ଅଧୀନ ହୋଇ ପଡ଼ିବେ । ଏ ଦମ୍ଭ ଓ ବିଶ୍ୱାସରେ, ରତନକୁ ଧରିବା ପରେ ପଲ୍ଲୀ ଆକ୍ରମଣ କରି ରକ୍ତପାତର ଆୟୋଜନ କଲି ନାହିଁ । ତାହାକୁ ଧରିବାର ଅବ୍ୟବହିତ ପୂର୍ବେ ଅଳ୍ପ କେତେକ ଜଣ ଭିଲଙ୍କର ରୁଧିରପାତ କରିବାକୁ ହେଲା । ମୋର ଦୃଢ଼ ବିଶ୍ୱାସ, ନେତା ଅଭାବରେ ବିଦ୍ରୋହୀ ଭିଲଗଣ ବର୍ତ୍ତମାନ ସ୍ୱତଃପ୍ରବୃତ୍ତ ଅଥବା ବାଧ୍ୟ ହୋଇ ରାଜାଙ୍କର ଅଧୀନତା ସ୍ୱୀକାର କରିବେ— ଭବିଷ୍ୟତରେ ସେମାନେ ଆମ ସୈନ୍ୟର ଅନ୍ତର୍ଭୁକ୍ତ ହୋଇ ପାରିବେ ।'

ସମସ୍ତେ ଭୈରବଙ୍କ ବିଚକ୍ଷଣତା ଓ ଦୂରଦର୍ଶିତାର ଢେର ପ୍ରଶଂସା କଲେ ।

ଦେଖୁଁ ଦେଖୁଁ ନୈଶ ଅନ୍ଧକାର ସଂପୂର୍ଣ୍ଣରୂପେ ତିରୋହିତ ହେଲା । ନଗରବାସିମାନେ ଆଜି କୁକ୍କୁଟ ଓ କାକମାନଙ୍କର ରାବ ଶୁଣି ନାହାନ୍ତି—ସୈନ୍ୟ କୋଳାହଳ ମଧ୍ୟରେ ଶୁଣିବାର ଅବସର ପାଇ ନାହାନ୍ତି । ସେ ଯାହାହେଉ ଦୁଃଖ-ରଜନୀର ତିରୋଭାବ ସଙ୍ଗେ ସଙ୍ଗେ ସୁଖ-ଦିବସର ଆବିର୍ଭାବ ହେଲା । ନଗରବାସିଙ୍କର ବହୁ ଦିନର ଉଦ୍‌ବେଳିତ ପ୍ରାଣ ଆଜି ପ୍ରକୃତିସ୍ଥ ହେଲା ।

ରତନେଶ୍ୱରକୁ ଦେଖିବା ସକାଶେ ନଗରର ଲୋକେ ଅତ୍ୟନ୍ତ ଉତ୍କଣ୍ଠିତ ହୋଇ ରାଜପ୍ରାସାଦ ସମ୍ମୁଖରେ ଯାଇ ରୁଣ୍ଡ ହେଲେ । ରତନେଶ୍ୱରଙ୍କର ବିଶାଳ ଶରୀର, ଦେହର ସମୁଜ୍ଜ୍ୱଳ କାନ୍ତି, ଚକ୍ଷୁର ଅପୂର୍ବ ଦୀପ୍ତି ଦେଖି ଲୋକେ ବିସ୍ମିତ, ଚମତ୍କୃତ ! ଜନତା ମଧ୍ୟରୁ କେହି କେହି କହିଲେ—ରତନ ତାହାର ପାପ-ଫଳ ଭୋଗ କରୁଛି. ତାହାର ଗର୍ବ ଖର୍ବ ହୋଇଅଛି । କେହି କେହି କହିଲେ—ଶେଷରେ ଭଗବାନ ରାଜ୍ୟର ଗୁହାରି ଶୁଣିଛନ୍ତି, ଭୈରବରୂପରେ ଯାଇ ତସ୍କରକୁ ବାନ୍ଧି ଆଣିଛନ୍ତି । କେହି କେହି ପ୍ରସିଦ୍ଧ ଋଷି ଚ୍ୟବନଙ୍କ ପୁତ୍ରର ଏହି ଶୋଚନୀୟ ଅବସ୍ଥାରେ ଦୁଃଖିତ ହେଲେ । ରତ୍ନାକରଙ୍କର ଗୁପ୍ତ ବନ୍ଧୁ, ଭିଲ ସୈନିକମାନେ ମର୍ମାହତ ହୋଇ ପଡ଼ିଲେ—ମନର ଦୁଃଖ କିନ୍ତୁ ପ୍ରକାଶ କରି ପାରିଲେ ନାହିଁ । ରତନେଶ୍ୱର ବିରୋଧରେ ଯାହା ତୁଣ୍ଡକୁ ଯାହା ଆସିଲା, ସବୁ କହିଗଲେ ।

ଭୈରବଙ୍କର କଥା ଓ ସମବେତ ବ୍ୟକ୍ତିମାନଙ୍କର ଜୟଧ୍ୱନି ଶୁଣି ଅତିରିକ୍ତ ରାଗରେ ରତ୍ନାକରଙ୍କର ସର୍ବାଙ୍ଗ କମ୍ପିତ ହେଲା । ସେ ପିଞ୍ଜରାବଦ୍ଧ ସିଂହ ସଦୃଶ ଉଗ୍ର ଗର୍ଜ୍ଜନ କରି ଆରକ୍ତ ଚକ୍ଷୁରେ ରାଜାଙ୍କୁ ଲକ୍ଷ୍ୟ କରି କହିଲେ—'ଶୁଣ ରାଜା, ଯୁଦ୍ଧରେ ଜୟ ବା ପରାଜୟ ସୁନିଶ୍ଚିତ । ଆର୍ଯ୍ୟର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ମୁଁ ଯୁଦ୍ଧ କରି ଆସୁଛି । ଆଜି ମୋର ପରାଜୟ ହୋଇଅଛି ସତ୍ୟ; କିନ୍ତୁ ଏ ପରାଜୟ ସ୍ଥାୟୀ ନୁହେ । ତୁମର ବିଜୟୋଲ୍ଲାସ, ଆନନ୍ଦ-କୋଳାହଳ ଅଳ୍ପକାଳସ୍ଥାୟୀ ମାତ୍ର । ରତନ ବର୍ତ୍ତମାନ ଶୃଙ୍ଖଳାବଦ୍ଧ—ତାହାର ପ୍ରଭାବ ନୁହେ । ରତନ-ପ୍ରଭାବ ଦମିତ ହୋଇ ନାହିଁ, ହୋଇ ପାରିବ ନାହିଁ—ସେ ଚିର ସ୍ୱାଧୀନ । ଭିଲମାନଙ୍କ ମଧ୍ୟରେ ଆଜି ରତନ ନାହିଁ, ଅଛି କିନ୍ତୁ ରତନ-ପ୍ରଭାବ, ରତନ-ଭାବ । ସେମାନଙ୍କ ଭିତରେ ଆଜି

ରତନ ଭାବ ପ୍ରଭାବ, ଶିକ୍ଷା ଦୀକ୍ଷା ଉତ୍ତରୁ ଉତ୍ତରତର ହୋଇ ଚାଲିଛି । ସେମାନଙ୍କ ମଧ୍ୟରେ ଅନାର୍ଯ୍ୟ-ବିଦ୍ୱେଷ ଉତ୍କଟତର ହୋଇ ମାତି ଉଠିଛି । ମୋତେ ବାନ୍ଧି ଆଣିଛ ବୋଲି ଭୀଲମାନେ ତୁମର ଅଧୀନତା ସ୍ୱୀକାର କରିବେ ମନେ କରୁଛ ? ଭୁଲ ଧାରଣା, ଅସାର ଆଶ୍ୱାସନା ! ରତନଙ୍କୁ ବନ୍ଦୀ କରି ତୁମେମାନେ ଶତ ଶତ ରତନଙ୍କର ସମ୍ମୁଖୀନ ହେବ । ରତ୍ନାକରର ମରଣରେ ଶତ ଶତ ରତ୍ନାକରଙ୍କର ଆବିର୍ଭାବ ହେବ—ସହସ୍ର ସହସ୍ର ଆର୍ଯ୍ୟଙ୍କର ଧ୍ୱଂସସାଧନ ହେବ । ମନେ ରଖ, ଅତ୍ୟାଚାର-ପୀଡ଼ିତ ଭୀଲର ପ୍ରତିହିଂସା-ବହ୍ନି ନିର୍ବାପିତ ହେବାର ନୁହେଁ ।”

ଏ କଥା ଶୁଣି, ରାଜା, ମନ୍ତ୍ରୀ ଓ ସେନାପତିମାନଙ୍କ ମଧ୍ୟରୁ ଗର୍ବବ୍ୟଞ୍ଜକ ହାସ୍ୟରୋଳ ଉତ୍ଥିତ ହେଲା—କେତେକ ଜଣଙ୍କ ପ୍ରାଣରେ ବାସ୍ତବିକ ଆତଙ୍କ ଉପସ୍ଥିତ ହେଲା । ରାଜାଙ୍କ ଆଦେଶରେ, ରତ୍ନାକର କାରାଗାରକୁ ନୀତ ହେଲେ । ତାଙ୍କ ହସ୍ତଶୃଙ୍ଖଳ ଉନ୍ମୋଚିତ କରାଯିବା ପରେ, ସେ ଗୋଟିଏ କକ୍ଷରେ ନିକ୍ଷିପ୍ତ ହେଲେ । ଅସ୍ତ୍ରଶସ୍ତ୍ର ସମ୍ବନ୍ଧରେ ଯେଉଁ ସୈନିକମାନଙ୍କ ପ୍ରତି ଦୋଷାରୋପ ହୋଇଥିଲା, ସେମାନେ ମଧ୍ୟ କାରାରୁଦ୍ଧ ହୋଇ ପଡ଼ିଲେ ।

ରାଜଧାନୀଟି ତମସାତୀରରେ ଅବସ୍ଥିତ । ନଦୀତୀରକୁ ଲାଗି ରାଜ-ଭବନ ଓ କାରାଗାର । ରାଜଭବନ ଓ କାରାଗାର ଚତୁର୍ଦ୍ଦିଗରେ ବିଶାଳ, ସମୁଚ୍ଚ ପ୍ରାଚୀର । ଏ ପ୍ରାଚୀରଟି ଠିକ୍ ନଦୀଧାରରୁ ଯେପରି ଉଠିଥିଲା । ରାଜପ୍ରାସାଦର ମଧ୍ୟ ସ୍ଥଳରେ ରାଜା ଓ ରାଣୀଙ୍କର କକ୍ଷସବୁ ଅବସ୍ଥିତ । ନଦୀତୀର-ସଂଲଗ୍ନ ପ୍ରାଚୀରର ଖୁବ୍ ନିକଟସ୍ଥ କକ୍ଷ ଦୁଇଟି ରାଜକୁମାର ଓ ରାଜକନ୍ୟାଙ୍କର ଶୟନମନ୍ଦିର । ବନ୍ଦୀଶାଳାର ଯେଉଁ କୋଠରୀରେ

ରତ୍ନାକର ଥିଲେ, ସେ କୋଠରୀର କେତୋଟି ବାତାୟନ ତମସାକୁ ମୁଖ କରି ଥିଲା । ବାତାୟନ ନିକଟରୁ ନଦୀଜଳ, ନଦୀର ଅପରପାର୍ଶ୍ୱସ୍ଥ ସୁବିସ୍ତୃତ ଘନ ଜଙ୍ଗଲ ସ୍ପଷ୍ଟରୂପେ ଦେଖା ଯାଉ ଥିଲା । ଏ ବାତାୟନ ଭାଙ୍ଗି ତମସା ଜଳରେ ଲମ୍ଫ ଦେବା ବ୍ୟତୀତ, ବନ୍ଦୀ ପକ୍ଷରେ ଗୁପ୍ତ-ପଳାୟନର ଅନ୍ୟ ଉପାୟ କିଛି ନ ଥିଲା ।

ଅର୍ଦ୍ଧରାତ୍ରି । ପୃଥିବୀ ଚନ୍ଦ୍ରିକାସ୍ନାତ । ନଗର ନିଃଶବ୍ଦ । ନଗର ଚତୁର୍ଦ୍ଦିଗସ୍ଥ ବନ ପର୍ବତ ଗମ୍ଭୀର ଆକୃତି ଧାରଣ କରିଅଛି । ହିଲ୍ଲୋଳିତ ବକ୍ଷରେ ତମସା ମନ୍ଥର ଗତିରେ ପ୍ରବାହିତ । ରତ୍ନାକର କାରାକକ୍ଷର ଗବାକ୍ଷ ନିକଟରେ ଉପବିଷ୍ଟ । ତାଙ୍କର ଉଦ୍‌ବିଗ୍ନ ପ୍ରାଣ, ଚଞ୍ଚଳ ହୃଦୟ ତାଙ୍କୁ ନିଦ୍ରାକୋଳକୁ ନେଉ ନାହିଁ । ସେ ନଦୀ ଉପରେ ବାରମ୍ବାର କାତର ଦୃଷ୍ଟିପାତ କରିବାକୁ ଲାଗିଲେ—ଏ ଦୃଷ୍ଟିପାତର ଯେପରି ଉଦ୍ଦେଶ୍ୟ ଥିଲା ଗୁପ୍ତ ପଳାୟନର ପରାମର୍ଶ-ପ୍ରାର୍ଥନା । ତମସା କିଛି ପରାମର୍ଶ ଦେଲା ନାହିଁ, କାରାଗାରରୁ କିପରି ପଳାଇବାର ଉପାୟ କହିଲା ନାହିଁ । ହତାଶ ନ ହୋଇ ରତ୍ନାକର ନଦୀର ଅପର ପାର୍ଶ୍ୱସ୍ଥ ସୁଦୂର-ବିସ୍ତୃତ ଅରଣ୍ୟ ପ୍ରତି ବ୍ୟାକୁଳ ଭାବରେ ନିରୀକ୍ଷଣ କଲେ । ବନ ମଧ କୌଣସି ଉପାୟ ବତାଇଲା ନାହିଁ । ଶେଷରେ ସେ ନିଜ ବିବେକର ପରାମର୍ଶ ଲୋଡ଼ିଲେ—ଗୁପ୍ତ ପଳାୟନର ଉପାୟ-ଚିନ୍ତାରେ ଭାସିବାକୁ ଲାଗିଲେ । ଅଦୂରରୁ ରାଜପ୍ରାସାଦର କେତେଗୋଟି ପ୍ରଦୀପାଲୋକିତ କକ୍ଷ ରତ୍ନାକରଙ୍କ ଦୃଷ୍ଟିପଥାରୂଢ଼ ହେଲା । ସେ ରାଜଭବନ ଓ ତାହାର ପ୍ରାଚୀର ଉପରେ ପୁନଃ ପୁନଃ ସତର୍କ ଦୃଷ୍ଟିନିକ୍ଷେପ କରିବାକୁ ଲାଗିଲେ । ତାଙ୍କର ବାସନା, କାରାଗୃହରୁ ଯେ କୌଣସି କୌଶଳରେ ମୁକ୍ତ ହୋଇ ଗୁପ୍ତ ଭାବରେ ରାଜଭବନରେ ପ୍ରବେଶ କରିବେ । ସେ ଗୁପ୍ତଚର ମୁଖରୁ ରାଜପ୍ରାସାଦରେ କିପରି କେଉଁ ଗୁପ୍ତ ମାର୍ଗରେ ପ୍ରବେଶ କରିବାର

ସୁବିଧା ହୋଇ ପାରେ ତାହା ଶୁଣିଥିଲେ । ସେ କଥା ଚିନ୍ତା କଲେ । ପର ମୂହୂର୍ତ୍ତରେ ଭାବିଲେ—ଭେକ ସର୍ପ ମୁଖରେ ରହି ଉପରେ ଉଡ଼ିବା ପତଙ୍ଗ ଖାଇବାକୁ ଇଚ୍ଛା କରେ । ଭେକ ସର୍ପ-କବଳରୁ ମୁକ୍ତ ହେଉଛି କିପରି ? ପତଙ୍ଗ ଭକ୍ଷଣ କରୁଛି ବା କିପରି ?' ମନେ ମନେ ହସିଲେ । ଶେଷରେ ତାଙ୍କର ଦୃଢ଼ ବିଶ୍ୱାସ ହେଲା ଯେ, ବେଙ୍ଗ ସାପ ତୁଣ୍ଡରୁ ଫିଟି ପତଙ୍ଗକୁ ଅବଶ୍ୟ ଗିଳିବ ।

ରତ୍ନାକରଙ୍କ ମନ ବିବିଧ ଚିନ୍ତାରେ ଆଲୋଡ଼ିତ ହେଉଥିଲା, ଏପରି ସମୟରେ ତମସା-ଧାରରେ କାରାଗାରପ୍ରାଚୀରର ମୂଳଦେଶରେ ଗୋଟିଏ କ୍ଷୁଦ୍ର ନୌକା ଆସି ଲାଗିଲା । ନୌକାର ଆରୋହୀ ତିନି ଜଣ—ଜଣେ ଯୁବତୀ, ଦୁଇଜଣ ଯୁବକ । ଜଣେ ଯୁବକ ହାତରେ ଦୀର୍ଘ ବର୍ଚ୍ଛା, ଅନ୍ୟଟି ଧନୁଃଶର ଧରିଥିଲା । ଯୁବତୀ ହସ୍ତରେ ନିଷ୍କୋଷିତ ତରବାରି । ନୌକାରେ ଥିଲା ଗୋଟିଏ ସୁଦୀର୍ଘ ରଜ୍ଜୁ, ସୁଦୃଢ଼ ନିଃଶ୍ରେଣୀ, କେତୋଟି ଖନନାସ୍ତ୍ର ।

କାରାଗୃହପ୍ରାଚୀର ନିକଟରେ ନୌକା ପହଞ୍ଚିବା କ୍ଷଣି ଯୁବତୀ ଏକ ପ୍ରକାର ମୁଖଧ୍ୱନିରେ ରତ୍ନାକରଙ୍କୁ ଗୋଟିଏ ସଙ୍କେତ ଦେଲା । ରତ୍ନାକର ବୁଝି ପାରିଲେ, ସେମାନେ ତାଙ୍କର ନିଜର ଲୋକ । ଏହା ଛଡ଼ା, ଜ୍ୟୋତ୍ସ୍ନା-ଲୋକରେ ସେ ଆରୋହୀମାନଙ୍କୁ ସ୍ପଷ୍ଟରୂପେ ଚିହ୍ନି ପାରିଲେ । ତାଙ୍କ ମୁଖ ପ୍ରସନ୍ନ ହୋଇଗଲା, ଆଶା ଓ ଉତ୍ସାହରେ ମନ ପ୍ରାଣ ପୁଲକିତ ହୋଇ ଉଠିଲା । ସେ ସଙ୍କେତ-ଧ୍ୱନିର ସାଙ୍କେତିକ ଉତ୍ତର ଦେଇ ନିଜେ ଜାଗରିତ ଥିବା କଥା ଜଣାଇଲେ ।

ପ୍ରାଚୀର ମୂଳରେ ନଦୀଜଳ ଗଭୀର ନ ଥିଲା । ଯୁବକ ଦୁହେଁ ନୌକାକୁ ଦୁଇ ପାର୍ଶ୍ୱରୁ ଜଡ଼ି ଧରି ଜଳରେ ଠିଆ ହେଲେ । ଯୁବତୀ

ଡ଼ଙ୍ଗାରେ ରହି ପ୍ରାଚୀର ଦେହରେ ଶିକ୍ସ୍ଟ ଅଡ଼ାଇ ରଖି ହାତରେ କୁଦାଳ ଧରି ଉପରକୁ ଉଠିଲା । ଗବାକ୍ଷ ନିକଟରେ ପହଞ୍ଚିବା ମାତ୍ରକେ ସେ ରତ୍ନାକରଙ୍କ ହାତକୁ କୁଦାଳଟି ବଢ଼ାଇ ଦେଲା । ରତ୍ନାକର ହସି ହସି ପଚାରିଲେ—'ସୁନ୍ଦରି ! ବନ୍ଦୀଶାଳାର ଏ କକ୍ଷରେ ମୁଁ ଅଛି ବୋଲି ଜାଣିଲ କିପରି ?'

ମାତଙ୍ଗୀ:— ଗୁପ୍ତଚର ପଠାଇ ସବୁ ବୁଝି ନେଇ ଥିଲି । ବିଳମ୍ବ କରନାହିଁ—ଗବାକ୍ଷ ଭାଙ୍ଗି ତଳକୁ ଖସ ।

ରତ୍ନାକର:—ମାତଙ୍ଗି ! ତୁମେ ମୋର ଉପଯୁକ୍ତ ସହଧର୍ମିଣୀ, ଅଭୟ-ଦାୟିନୀ ଜୀବନସଙ୍ଗିନୀ । ତୁମେ ବାସ୍ତବିକ ବୀରାଙ୍ଗନା ।

ରତ୍ନାକର କୁଦାଳରେ ଗବାକ୍ଷର କେତେକାଂଶ ଭାଙ୍ଗି ପଳାୟନ-ପଥ ପ୍ରସ୍ତୁତ କଲେ । ପ୍ରଥମରେ ମାତଙ୍ଗୀ, ପରେ ରତ୍ନାକର ଧୀରେ ଧୀରେ ନୌକାକୁ ଖସିଲେ । ରତ୍ନାକର ଅତ୍ୟନ୍ତ ଆନନ୍ଦରେ ମାତଙ୍ଗୀକୁ ପରେ ଯୁବକ ଦୁହିଁଙ୍କୁ ଆଲିଙ୍ଗନ କଲେ । ସମସ୍ତେ ଆନନ୍ଦିତ, ଆଶ୍ୱସ୍ତ—ଶତ୍ରୁ ଆଖିରେ ଧୂଳି ପକାଇ ପାରିଛନ୍ତି ବୋଲି ଗର୍ବିତ । ରତ୍ନାକର ତିନିଜଣଙ୍କୁ ଅତି ଧୀର ସ୍ୱରରେ କିଛି କହିଲେ । ପରେ ସମସ୍ତେ ନୌକାରେ ବସି ତାହା ନଦୀର ଅନ୍ୟ ତୀରକୁ ଚଳାଇ ନେଲେ । ଅପର ପାର୍ଶ୍ୱରେ ପାଦ ଦେବା ମାତ୍ରକେ ରତ୍ନାକର ରାଜପ୍ରାସାଦର ଗୋଟିଏ ଆଲୋକିତ କୋଠରି ପ୍ରତି ସେମାନଙ୍କର ଦୃଷ୍ଟି ଆକୃଷ୍ଟ କଲେ । କହିଲେ—'ମୋର ମୁକ୍ତିରେ ତୁମମାନଙ୍କର କାର୍ଯ୍ୟ ଶେଷ ହୋଇ ନାହିଁ । ତୁମମାନଙ୍କୁ ଆଉ ଗୋଟିଏ ଦୁରୂହ କାମ କରିବାକୁ ହେବ । ଏଇକ୍ଷଣି ରାଜକୁମାର-ହରଣରେ ମୋତେ ତୁମେମାନେ ସାହାଯ୍ୟ କରିବ । ଏହା କରି ପାରିଲେ ଶତ୍ରୁ ଉପଯୁକ୍ତ ଶିକ୍ଷା ପାଇବ—ରାଜା

ବୁଝିବ, ରତନ କାରାଗାରରୁ ବାହାର ଆସିବାର କାର୍ଯ୍ୟ କରନାହିଁ, କରଛୁ ବୀରର କାର୍ଯ୍ୟ ।'

ତିନ ଜଣ ତାଙ୍କ ପ୍ରସ୍ତାବକୁ ପସନ୍ଦ କଲେ, ତାଙ୍କ ଆଦେଶ ପାଳନରେ ତତ୍ପର ହେଲେ । ରତ୍ନାକର ବନ ପ୍ରାନ୍ତରେ କିଛିଦୂର ଯାଇ ଗୋଟିଏ ବୃକ୍ଷରୁ କେତେ ଖଣ୍ଡ ପତ୍ର ଆଣିଲେ । ସେମାନେ ପରେ ରାଜଭବନର ପ୍ରାଚୀର ମୂଳକୁ ନୌକା ସ୍ଥଳିତ କଲେ । ମାତଙ୍ଗୀ ନୌକାରେ ରହିଲା । ରତ୍ନାକର ଓ ଦୁଇଜଣ ଭିଲ ଯୁବକ ନିଶୁଣି ସାହାଯ୍ୟରେ ରାଜଭବନ ବହିଃପ୍ରାଚୀର ଉଲ୍ଲଂଘନ କଲେ । ବାହ୍ୟ ପ୍ରାଚୀରଠାରୁ ଅଳ୍ପ କେତେକ ଗଜ ଦୂରରେ ରାଜକୁମାରଙ୍କର ଶୟନ-ମନ୍ଦିର—ଦ୍ୱିତଳ ପ୍ରସାଦ । ରାଜପୁତ୍ରଙ୍କ ଶୟନ-ମନ୍ଦିରର ପାଦ ଦେଶରେ ଭିଲ ଯୁବକ ଦୁହେଁ ନିଶୁଣି ଧରି ଠିଆ ହୋଇ ରହିଲେ ଏବଂ ରତ୍ନାକର ଦ୍ୱିତଳ ଅଟ୍ଟାଳିକା ଉପରକୁ ଅତି ଯତ୍ନ ଓ କୌଶଳରେ ଉଠିଲେ । ତାଙ୍କ ଦକ୍ଷିଣ ହସ୍ତରେ ଖଡ୍ଗ, ବାମ ହସ୍ତରେ ସେହି ବୃକ୍ଷ ପତ୍ର ।

ରାଜପୁତ୍ରଙ୍କ ଶୟନମନ୍ଦିରର ସଂଲଗ୍ନ କକ୍ଷଟି ରାଜକନ୍ୟାଙ୍କ ପାଇଁ ନିର୍ଦ୍ଦିଷ୍ଟ । ଶୟନମନ୍ଦିରର ଦୁଇ ଗୋଟି ଦ୍ୱାର । ରାତ୍ରି ସମୟରେ କେବେ କେବେ ରାଜକୁମାରଙ୍କ ଶୟନକକ୍ଷର ଦ୍ୱାର ସବୁ ରୁଦ୍ଧ ହେଉ ନ ଥିଲା । ରତ୍ନାକର ଦେଖିଲେ, ଦ୍ୱାର ଦୁଇଟି ଖୋଲା ରହିଛି । ସେ ଅତି ଯତ୍ନରେ ଶୟନମନ୍ଦିରରେ ପ୍ରବେଶ କଲେ । ଦେଖିଲେ, ରାଜକୁମାର ପର୍ଯ୍ୟଙ୍କ ଉପରେ ଦୁଗ୍ଧଫେନନିଭ ଶଯ୍ୟାରେ ଗାଢ଼ ନିଦ୍ରାକୋଳରେ ଶାୟିତ ଏବଂ ପର୍ଯ୍ୟଙ୍କ ତଳେ ଜଣେ ସେବକ ନିଦ୍ରିତ । ଯେଉଁ ଦ୍ୱାର-ବାଟେ ରତ୍ନାକର କକ୍ଷରେ ପ୍ରବିଷ୍ଟ ହେଲେ, ସେ ଦ୍ୱାରର ଖୁବ୍ ସମୀପରେ ରାଜକୁମାର ଓ ସେବକ ଶୋଇଥିଲେ । ରତ୍ନାକର ଧୀର ପଦ ବିକ୍ଷେପରେ

ଉପସ୍ଥ ଦ୍ୱାର ପ୍ରତି ପୁନଃ ପୁନଃ ସତର୍କ ଦୃଷ୍ଟି ପକାଇ ରାଜକୁମାରଙ୍କ ପଲଙ୍କ ନିକଟରେ ପହଞ୍ଚିଲେ ଏବଂ କରପଦ୍ମରେ ଅଜୀତ ବୃକ୍ଷପତ୍ରର ରସ ବାହାର କରି ରାଜକୁମାରଙ୍କୁ ଶୁଙ୍ଘାଇ ଦେଲେ । ବାଳକ ରାଜକୁମାର ଏକାବେଳକେ ଚୈତନ୍ୟ ହରାଇ ପଡ଼ିଲେ । ପରେ ରତ୍ନାକର ସୁପ୍ତ ସେବକର ଗଳାରେ ନିଜର ବାମ ହସ୍ତ ପକାଇ ଜୋରରେ ଚପି ଦେଲେ । ଶ୍ୱାସରୁଦ୍ଧ ପରିଚାରକ ମୁଖବ୍ୟାଦାନ କରିବା ମାତ୍ରକେ ରତ୍ନାକର ମୁଖରେ ବସ୍ତ୍ର ଭରିତି କରି ଅଧିକ ଜୋରରେ ଗଳା ଚିପିଲେ । ରତ୍ନାକରଙ୍କର ଭୀଷଣ ହସ୍ତ ଯାହାର ଗଳାରେ ଭୀଷଣଭାବରେ ପଡ଼ିଛି, ସେ ଜୀବନ ଧରି ରହିପାରେ କି ? ସେବକ ସେହି ମୁହୂର୍ତ୍ତରେ ପ୍ରାଣ ହରାଇଲା । ପରେ ରତ୍ନାକର ଚେତନା-ବିରହିତ ରାଜକୁମାରଙ୍କୁ ସ୍କନ୍ଧରେ ପକାଇ କକ୍ଷ ତ୍ୟାଗ କଲେ ଏବଂ ଶିଡ଼ିରେ ପ୍ରାସାଦତଳକୁ ଖସିଲେ ।

ରାଜକୁମାରଙ୍କର ଶୟନକକ୍ଷରେ କେତେ ଗୋଟି ଅସ୍ତ୍ର, ବହୁମୂଲ୍ୟ ପରିଚ୍ଛଦ, ଗୋଟିଏ ଅଳଙ୍କାର-ସିନ୍ଦୁକ ଥିଲା । ସେ ସବୁ ନେଇ ଆସିବା ନିମନ୍ତେ ରତ୍ନାକର ଜଣେ ଯୁବକଙ୍କୁ କହିଲେ । ସେ ଉପରକୁ ଉଠି ସେ ସମସ୍ତ ପଦାର୍ଥ ନେଇ ଆସିଲା । ପ୍ରଥମରେ ରତ୍ନାକର ରାଜକୁମାରଙ୍କୁ ଧରି ବହିଃପ୍ରାଚୀର ଉପରକୁ ଉଠି ମାତଙ୍ଗୀକୁ ଉର୍ଦ୍ଧ୍ୱକୁ ରଜ୍ଜୁ ନିକ୍ଷିପ୍ତ କରିବା ପାଇଁ ଇଙ୍ଗିତ କଲେ । ମାତଙ୍ଗୀ ଦଉଡ଼ି ଫିଙ୍ଗିବାରୁ ରତ୍ନାକର ସେଥିରେ ରାଜପୁତ୍ରଙ୍କର ଜୀବନ୍ତ ଅଥଚ ଜଡ଼ ଶରୀର ବାନ୍ଧି ନୌକା ମଧ୍ୟକୁ ଛାଡ଼ିଲେ । ଶେଷରେ ଉଭୟେ ପରିଚ୍ଛଦାଦି ଧରି ନଦୀକୁ ଫେରିଲେ ଏବଂ ବିଦ୍ୟୁଦ୍‌ବେଗରେ ନୌକା ଚଳାଇଲେ । ସେମାନେ ନିଜ ପଲ୍ଲୀରେ ପହଞ୍ଚିବାବେଳକୁ ପ୍ରାୟ ପ୍ରାତଃକାଳ ହୋଇଥିଲା । ଗୃହରେ ଉପନୀତ ହେବାକ୍ଷଣି, ରତ୍ନାକର କୌଣସି ଔଷଧ ପ୍ରୟୋଗରେ ରାଜକୁମାରଙ୍କର ଚୈତନ୍ୟ ଫେରାଇ ଆଣି, ତାଙ୍କୁ ଭୂଗର୍ଭକକ୍ଷରେ ମଦନଙ୍କ ନିକଟରେ ବନ୍ଦୀ କରି ରଖିଲେ ।

ଆଗେ କହାଯାଇଛି, ସେତେବେଳେ ରାଜକୁମାରଙ୍କର ବୟସ ଅଳ୍ପ ବାର ବର୍ଷ । ସୁକୁମାରଶରୀର ବାଳକ ଆପଣାକୁ ନୂତନ ସ୍ଥାନରେ, ଶତ୍ରୁ, ଗୃହରେ ଦେଖି ଅତିଶୟ ଭୀତ, ବିସ୍ମିତ ହୋଇ ବିଳାପ କରିବାକୁ ଲାଗିଲେ । ଏ ନିଦାରୁଣ ଦୃଶ୍ୟରେ ମଦନ ସ୍ତମ୍ଭିତ, ମର୍ମାହତ !

ପାଠକପାଠିକାମାନେ ଥରେ ରାଜଭବନକୁ ଦୃଷ୍ଟି ଫେରାନ୍ତୁ—ଦେଖିବେ ସେଠାରେ ମହା ହୁଲସ୍ଥୁଲ, ଘୋର କୋଳାହଳ, ହାହା କାର, କାତର ଚୀତ୍କାର ! ରାଜପ୍ରାସାଦରେ ରାଜକୁମାରଙ୍କୁ, କାରାଗାରରେ ରତ୍ନାକରଙ୍କୁ ନ ଦେଖି, ରାଜକୁମାରଙ୍କ ସେବକର ମୃତ କଳେବର ଦେଖି ରାଜ-ପରିବାର ଓ ନଗରବାସିଗଣ ଗଭୀର ବିଷାଦ ଓ ବିସ୍ମୟରେ ଅଥୟ ହୋଇ ପଡ଼ିଲେ । ରାଜାଙ୍କ ଆଦେଶରେ ଭୈରବ ରାଜପୁତ୍ର-ସନ୍ଧାନରେ ପ୍ରବୃତ୍ତ ହେଲେ ।



# ଉତ୍‌ଥାନ

୧

ଦିନେ ରତ୍ନାକର ପଥିକମାନଙ୍କୁ ହତ୍ୟା କରିବା ଅଭିପ୍ରାୟରେ ହସ୍ତରେ ଲୌହ ମୁଦ୍ଗର ଧରି ଗୋଟିଏ ସଂକୀର୍ଣ୍ଣ ବନ ପଥରେ ଅପେକ୍ଷା କରି ରହିଲେ । ଦେଖୁଁ ଦେଖୁଁ ମଧ୍ୟାହ୍ନ ହୋଇଗଲା; ଅଥଚ କେହି ସେହି ମାର୍ଗରେ ଦେଖାଗଲେ ନାହିଁ । ସେ ବ୍ୟସ୍ତ ହୋଇ ଦୂରରୁ ପଥିକ ଦେଖିବା ପାଇଁ ବୃକ୍ଷଶାଖା ଉପରକୁ ଉଠିଲେ । କାହାକୁ ଦେଖି ପାରିଲେ ନାହିଁ । ହତାଶ ହୋଇ ତଳକୁ ଖସିଲେ, ପଲ୍ଲୀକୁ ବାହୁଡ଼ିବାକୁ ମନ ବଳାଇଲେ । କିନ୍ତୁ ପର କ୍ଷଣରେ ତାଙ୍କ ଇଚ୍ଛା ହେଲା ସେ ବୃକ୍ଷ ଉପରକୁ ଯାଇ ଶେଷ ଥର ଚେଷ୍ଟା କରିବେ । ସଙ୍ଗେ ସଙ୍ଗେ ଇଚ୍ଛା କାର୍ଯ୍ୟରେ ପରିଣତ କଲେ ।

ରତ୍ନାକର ବୃକ୍ଷଶାଖାରେ ଯାଇ ବସିବାକ୍ଷଣି କିଛି ଦୂରରେ ଦେଖିଲେ, ଦୁଇ ଜଣ ସନ୍ନ୍ୟାସୀ ଆସୁ ଅଛନ୍ତି । ସେ ଦୁହିଁଙ୍କ ମଧ୍ୟରେ ଜଣେ ବୃଦ୍ଧ, ଆଉ ଜଣେ ଯୁବକ । ରତ୍ନାକର ହୃଷ୍ଟ ପ୍ରାଣରେ ବୃକ୍ଷରୁ ଖସି ଲୌହ ମୁଦ୍ଗରଟି କାନ୍ଧରେ ପକାଇ ପଥ ମଧ୍ୟରେ ଠିଆ ହେଲେ । ସନ୍ନ୍ୟାସୀ ଦୁହେଁ କ୍ରମେ ତାଙ୍କର ନିକଟବର୍ତ୍ତୀ ହେବା ମାତ୍ରକେ ରତ୍ନାକର ବିକଟ ଚିତ୍କାର କଲେ—'କିଏ ତୁମେମାନେ ?' କେବଳ ଚିତ୍କାର ନୁହେଁ, ସଙ୍ଗେ ସଙ୍ଗେ ଧମକ । ପଥିକମାନେ ସେଠାରେ ଠିଆ ହୋଇ ରହିଲେ । ଯୁବକ ସନ୍ନ୍ୟାସୀ ଉତ୍ତର କଲେ—'ଆମେମାନେ ବାଟୋଇ, ସନ୍ନ୍ୟାସୀ ।'

ରତ୍ନାକର ଉଚ୍ଚକଣ୍ଠର ଗର୍ଜ୍ଜନ କରି କହିଲେ—'ସନ୍ନ୍ୟାସୀ ହୁଅ ବା ଅନ୍ୟ କୌଣସି ଜନ୍ତୁ ହୁଅ—ଯେଉଁଠି ଠିଆ ହୋଇଛ ସେଇଠି ରହ । ପଦେ ହେଲେ ଅଗ୍ରସର ହୁଅ ନାହିଁ । ଖବରଦାର !' ଏହା କହି ସେ ମୁଦ୍ଗର ଉଠାଇ ବୃଦ୍ଧ ସନ୍ନ୍ୟାସିଙ୍କୁ ପ୍ରହାର କରିବାକୁ ଉଦ୍ୟତ ହେଲେ । ବୃଦ୍ଧ ସନ୍ନ୍ୟାସୀ ଭୀତି ପ୍ରକାଶ କରି କହିଲେ—'ବାଟ ଓଗାଳି ମାରିବାକୁ ଆସିଛ କାହିଁକି ରତ୍ନାକର ?'

ରତ୍ନାକର—ତୁମମାନଙ୍କୁ ହତ୍ୟା କରି ଦେହରେ ଯା'ଅଛି ସବୁ ନେଇଯିବ ।

ବୃଦ୍ଧ ସନ୍ନ୍ୟାସୀ—ଆମେମାନେ ଗରିବ, ଭିକ୍ଷା କରି ବଞ୍ଚୁ । ଆମ ପାଖରେ ତ ଧନ ନାହିଁ । ଆମକୁ ମାରି ପାଇବ କଣ ?

ରତ୍ନାକର—ନ ଥାଉ ଧନ, ତୁମମାନଙ୍କୁ ମାରି ଦୁଇଖଣ୍ଡି ଗେରୁଆ ଲୁଗା ତ ପାଇବ ।

ଯୁବକ ସନ୍ନ୍ୟାସୀ—ଏହି ତୁଚ୍ଛ ଦୁଇଖଣ୍ଡି ଛିଣ୍ଡା କନା ପାଇଁ ସନ୍ନ୍ୟାସି-ହତ୍ୟା କରିବ ? ଆମେମାନେ ତପସ୍ୱୀ, ବ୍ରାହ୍ମଣ । ଆମମାନଙ୍କୁ ହତ୍ୟା କର ନାହିଁ, ଅଧିକ ପାପ ଅର୍ଜ୍ଜନ କର ନାହିଁ ରତନ ।

ବୃଦ୍ଧ— ରତ୍ନାକର, ତୁମେ ଅଦ୍ୟାବଧି ଯେଉଁ ସବୁ ପାପ କର୍ମ କରିଛ, ତାହା ସ୍ମରଣ କର । ସେଥିରୁ ମୁକ୍ତ ହେବାକୁ ଚେଷ୍ଟା କର ।

ରତ୍ନାକରଙ୍କର ଉଚ୍ଚ ଭର୍ତ୍ସିତ ହାସ୍ୟରବରେ ବନର ସେଇ ଭାଗ କଂପିତ ହେଲା । ସେ ଗମ୍ଭୀର ସ୍ୱରରେ କହିଲେ—'ରଖି ଦିଅ ତୁମର ସନ୍ନ୍ୟାସ ! ପାପ ! 'ପାପ' କ'ଣ ?

ବୃଦ୍ଧ:— ଯେଉଁ କାର୍ଯ୍ୟ ଦ୍ୱାରା ମନରେ ତାପ ଲାଗେ ତାହାହିଁ ପାପ । ଯାହାର ଯାହା କରଣୀୟ, ସେହି କର୍ତ୍ତବ୍ୟ କର୍ମ୍ମର ବ୍ୟାଘାତ— ଯେ କୌଣସି କର୍ମ୍ମ ଦ୍ୱାରା ହେଉ—ତାହାହିଁ ପାପ । ଚୋରି ମହାପାପ । ଚୋରି ଦ୍ୱାରା ଲୋକଙ୍କ ମନରେ, ସମାଜରେ ପ୍ରଭୂତ ପରିମାଣରେ ତାପ ବା ଅଶାନ୍ତିର ସୃଷ୍ଟି ହୋଇଥାଏ— ସୁତରାଂ ପାପ ।

ରତ୍ନାକର—ହାଃ ହାଃ ହାଃ ହାଃ ମୋର ଚୋରି ଡକାଏତି ଦ୍ୱାରା ଅନେକ ଲୋକଙ୍କ ମନରେ ଢେର ସନ୍ତୋଷ ଜାତ ହୁଏ । ମୋ'ର/କାର୍ଯ୍ୟ ଦ୍ୱାରା ମୋ ଆଶ୍ରିତ ଜୀବମାନଙ୍କ ହୃଦୟରେ,

ଅତ୍ୟାଚାରୀଙ୍କ ଶିକ୍ଷା ଦେଲେ ଜାତି ମଧ୍ୟରେ ସୁଖ ଶାନ୍ତିର ସୃଷ୍ଟି ହୋଇଥାଏ । ଏଣୁ ଚୋରି ପାପ ନୁହେଁ—ମହା ପୁଣ୍ୟ । ଜୀବନରେ ମୁଁ ଢେର ଜିତେନ୍ଦ୍ରିୟ ଯତି ବ୍ରହ୍ମଚାରୀଙ୍କୁ ଦେଖିଛି । ପ୍ରତିଦିନ ଏ ମାର୍ଗରେ ଯେ ଯାଏ, ତାହାକୁ ମାରି ତାହାର ସମସ୍ତ ଜିନିଷ ମୁଁ ଛଡ଼ାଇ ନିଏଁ । ସେଥିରେ ମୋର ଉଦର ପୂରଣ ହୁଏ—ମୋର ଆଶ୍ରିତ ଅନୁଗତ ଲୋକଙ୍କର ଉଦର-ପୂରଣ ହୁଏ, ମହୋପକାର ହୋଇଥାଏ । ରତ୍ନାକର ମନୁଷ୍ୟର ପ୍ରଧାନତଃ ଆର୍ଯ୍ୟ ଜାତିର ଯମ । ରତନଦସ୍ୟୁର ହାତରେ ପଡ଼ିଲେ ଆଉ ରକ୍ଷା ନାହିଁ ।

ଏହା କହି ସେ ତପସ୍ୱିଙ୍କୁ ପ୍ରହାର କରିବାକୁ ପୁଣି ସମୁଦ୍ୟତ ହେଲେ । ବୃଦ୍ଧ ସନ୍ନ୍ୟାସୀ କହିଲେ—"ଆମର ଉପଦେଶ ବାକ୍ୟ ହାସ୍ୟରେ ଉଡ଼ାଇ ଦିଅ ନାହିଁ ରତନ । ପବିତ୍ର ଋଷିକୁଳରେ ତୁମର ଜନ୍ମ । ତୁମେ ସକଳ ଶାସ୍ତ୍ରରେ ଗଭୀର ଜ୍ଞାନ ଅର୍ଜ୍ଜନ କରିଥିଲ—ତୁମର ଅଗାଧ ଧର୍ମବୁଦ୍ଧି ଥିଲା । ପାପ କର୍ମ ପ୍ରଭାବରେ ତୁମର ସେଇ ଜ୍ଞାନ, ବୁଦ୍ଧି ବିବେକ ସୁପ୍ତ ହୋଇ ପଡ଼ିଛି । ପୂର୍ବ କଥା ମନେ ପକାଅ, ଯାହା କରୁଛ ତାହା ଚିନ୍ତା କରି ଦେଖ । ତୁମ ମନରେ ସେଇ ଦିବ୍ୟ ଜ୍ଞାନର ପୁଣି ଉନ୍ମେଷ ହେବ—ତୁମର ବୁଦ୍ଧି ବିବେକ ପୁଣି ବିକଶିତ ହୋଇ ଉଠିବ ।

ରତ୍ନାକରଙ୍କ ପ୍ରାଣରେ ହଠାତ୍ ଚମକ ଆସିଲା । ତପସ୍ୱି ଦ୍ୱୟଙ୍କ ଆଧ୍ୟାତ୍ମିକ ପ୍ରଭାବରେ ତାଙ୍କର ନାସ୍ତିକତା ଅସ୍ତେ ଅସ୍ତେ ଅନ୍ତର୍ହିତ ହେବାକୁ ଆରମ୍ଭ କଲା । ସେ ତୁନୀ ହୋଇ ରହିଲେ ।

ନାରଦ:—ଶୁଣ ରତ୍ନାକର । ତୁମେ ଯେଉଁ କାର୍ଯ୍ୟ କରୁଛ ତାହାର ଫଳ ଜାଣ ? ଏକଶତ ଗୋରୁ ମାରିଲେ ଯେତେ ପାପ ହୁଏ,

ସେତିକି ପାପ ହୁଏ ଏକ ସ୍ତ୍ରୀହତ୍ୟାରେ । ଏକଶତ ସ୍ତ୍ରୀହତ୍ୟାର ପାପ ହୋଇଥାଏ ଏକ ଜଣ ବ୍ରାହ୍ମଣ-ବଧରେ । ଏକଶତ ବ୍ରାହ୍ମଣବଧର ପାପ ସହିତ ଜଣେ ମାତ୍ର ବ୍ରହ୍ମଗୁରୁ-ହତ୍ୟାର ପାପ ସମାନ । ଜଣେ ସନ୍ନ୍ୟାସିଙ୍କ ହତ୍ୟା କଲେ ଯେ କେତେ ମହାପାପ ହୁଏ ତାହାର ସୀମା ନାହିଁ । ସନ୍ନ୍ୟାସିମାନେ ଯେଉଁ ମାର୍ଗରେ ଚାଲି ଯା'ନ୍ତି, ସେହି ମାର୍ଗର ଉଭୟ ପାର୍ଶ୍ୱ ମହା ତୀର୍ଥରେ ପରିଣତ ହୋଇଥାଏ । ସନ୍ନ୍ୟାସିବଧରେ ମହାପାପ କରିବାକୁ ଯାଉଛ ?

ରତ୍ନାକର—ମୁଁ ଯେ ଅନେକ ସନ୍ନ୍ୟାସିଙ୍କି ବଧ କରିଛି ।

ବୃଦ୍ଧ— ଅଚ୍ଛା, ତୁମେ ଯଦି ଆମ ଦୁହିଁଙ୍କି ହତ୍ୟା କରିବାକୁ ଚାହିଁ, ହତ୍ୟା କର, ଆପତ୍ତି ନାହିଁ । ତେବେ ଗୋଟିଏ କଥା ତୁମକୁ ପଚାରେଁ—ତୁମେ ପ୍ରତିଦିନ ଯେଉଁ ମହାପାପ କରୁଛ, ଆଉ କେହି ତାହାର ଭାଗ ନେବେ ? ନା ତୁମକୁହିଁ ଏ ପାପର ଫଳ ଭୋଗ କରିବାକୁ ହେବ ?

ରତ୍ନାକର ଚମକି ଉଠିଲେ । କହିଲେ—'ମୁଁ ଏକଲା ଏ ପାପର ଫଳ ଭୋଗ କରିବ କାହିଁକି ? ମୋର ଉପାର୍ଜ୍ଜନରେ ଯେଉଁମାନଙ୍କର ଭରଣପୋଷଣ ହୁଏ, ସେମାନେ ସମସ୍ତେ ମୋ ପାପରେ ଭାଗୀ ।'

ବୃଦ୍ଧ ସନ୍ନ୍ୟାସୀ ହସି କହିଲେ, 'ଭୁଲ ବୁଝିଛ ରତ୍ନାକର । ତୁମେ ପାପ କରୁଛ—ତୁମକୁ ଏକାକୀ ଏ ପାପର ଫଳ ଭୋଗ କରିବାକୁ ହେବ । ଅନ୍ୟ କେହି ତାହାର ଭାଗ ନେବେ ନାହିଁ । ଥରେ ଘରକୁ ଯାଇ ଶାଶୁ, ଶଶୁର, ପତ୍ନୀ ଓ ଆଶ୍ରିତ ପିଲମାନଙ୍କୁ ଏ କଥା ପଚାର— ସେମାନେ ତୁମର ପାପଭାଗୀ ହେବାକୁ ସ୍ୱୀକୃତ ଅଛନ୍ତି କି ନା ।'

ରତ୍ନାକର—ମୋତେ ବୋକା ମନେ କରୁଛ ବୃଦ୍ଧ ? ମୁଁ ଘରକୁ

ବାହାରଗଲେ, ତୁମେମାନେ ଏଠାରୁ ସହଜରେ ପଳାଇବ ।
ଏଇ ତ ମତଲବ ?

ବୃଦ୍ଧ— ନା, ନା, ସତ୍ୟ କରୁଛୁଁ—ତୁମେ ଫେରି ନ ଆସିବା ପର୍ଯ୍ୟନ୍ତ ଆମେମାନେ ଏ ସ୍ଥାନରୁ ଘୁଞ୍ଚିବୁ ନାହିଁ । ତୁମେ ଯାଇ ବୁଝି ଆସ ।

ବୃଦ୍ଧ ସନ୍ନ୍ୟାସିଙ୍କ ସତ୍ୟବଚନରେ ରତ୍ନାକରଙ୍କର ବିଶ୍ୱାସ ଜନ୍ମିଲା । ସେ ପୁନଃ ପୁନଃ ପଛକୁ ମୁଖବୁଲାଇ ପଲ୍ଲୀ ଅଭିମୁଖରେ ଅଗ୍ରସର ହେଲେ ।



୨

ଅମରାବତୀ ଦେବତାମାନଙ୍କର ବାସସ୍ଥାନ । ଶିବ ଶିବଲୋକରେ, ବ୍ରହ୍ମା ବ୍ରହ୍ମଲୋକରେ ରହନ୍ତି । ଏ ସମସ୍ତ ଉପରେ ଗୋଲୋକ—ଲକ୍ଷ୍ମୀ ନାରାୟଣଙ୍କର ବାସସ୍ଥଳ । ଗୋଲୋକଧାମ ଦେବତାଗଣଙ୍କର ତୀର୍ଥ । ଦେବତାମାନେ କେବେ କେବେ ଗୋଲୋକକୁ ଯାଇ ଲକ୍ଷ୍ମୀ-ନାରାୟଣଙ୍କୁ ଦର୍ଶନ କରି ଆସନ୍ତି ।

ଦେବର୍ଷି ନାରଦ ସକଳ ସୁଖ ସଂପଦ, ଭୋଗ ବିଳାସ ତ୍ୟାଗ କରି ଅହୋରାତ୍ରି କେବଳ ଭଗବତ୍‌ଚିନ୍ତାରେ ବୁଡ଼ି ରହନ୍ତି, ହରିନାମ ଗାନରେ ବିଭୋର ହୁଅନ୍ତି । ସେ ବିଭିନ୍ନ ସମୟରେ ଗୋଲୋକଧାମକୁ ଯାଇ ଲକ୍ଷ୍ମୀ ନାରାୟଣଙ୍କୁ ଦର୍ଶନ କରନ୍ତି ।

ଥରେ ନାରଦ ଗୋଲୋକରେ ପ୍ରବିଷ୍ଟ ହୋଇ ଦେଖିଲେ, ନାରାୟଣ ଚାରି ରକମ ମୂର୍ତ୍ତି ଧାରଣ କରିଛନ୍ତି । ଜଣେ ସିଂହାସନରେ ଉପବିଷ୍ଟ, ଜଣେ ସିଂହାସନ ପଛରେ ସୁବର୍ଣ୍ଣ ଛତ୍ରହସ୍ତରେ ଦଣ୍ଡାୟମାନ । ଆଉ ଦୁଇଜଣ ସିଂହାସନର ଦୁଇ ପାର୍ଶ୍ୱରେ ଠିଆ ହୋଇ ଚାମର ଢାଳୁଛନ୍ତି । ସିଂହାସନାସୀନ ମୂର୍ତ୍ତିଙ୍କ ବାମ ଭାଗରେ ଲକ୍ଷ୍ମୀ ଅପୂର୍ବ ସୁନ୍ଦରୀ ମାନବୀରୂପ ଧରି ବସି ଅଛନ୍ତି । ସମସ୍ତଙ୍କ ମୁଖରୁ ମଧୁର ହାସ୍ୟ, ଗମ୍ଭୀର ଆନନ୍ଦ ଫୁଟି ଉଠିଛି । ସେଇ ହାସ୍ୟ ଓ ଆନନ୍ଦ ମଧ୍ୟରେ କିପରି ଗୋଟାଏ କୌତୁକ ଭାବ ଖେଳି ବୁଲୁଅଛି । ଅନନ୍ତଲୀଳାବିହାରୀ ଭଗବାନଙ୍କର ଏ ଆକସ୍ମିକ ମୂର୍ତ୍ତି-ପରିବର୍ତ୍ତନ ଦେଖି ଦେବର୍ଷି ଏକାବେଳକେ ବିସ୍ମିତ । ବିଭିନ୍ନ ମୂର୍ତ୍ତିର ଅର୍ଥ ଓ ଉଦ୍ଦେଶ୍ୟ କିଛି ବୁଝି ପାରିଲେ ନାହିଁ । ଯାହା ହେଉ ଏ ବିଚିତ୍ର ଦୃଶ୍ୟରେ ତାଙ୍କ ହୃଦୟ ଅତିଶୟ ଉଲ୍ଲାସରେ ଉତ୍‌ଫୁଲ୍ଲ ହୋଇ ଉଠିଲା, ତାଙ୍କ ସର୍ବାଙ୍ଗ ପୁଲକିତ ହୋଇଗଲା । କିଛି ସମୟ ସେ

ବୀଣା ବଜାଇ ବଜାଇ ହରିନାମ ଗାନରେ ବିହ୍ୱଳ ହୋଇ ରହିଲେ । ପରେ ଲକ୍ଷ୍ମୀ ନାରାୟଣଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କରି ଗୋଲୋକଧାମ ତ୍ୟାଗ କଲେ ।

ଲକ୍ଷ୍ମୀନାରାୟଣଙ୍କର ଏ ଅପୂର୍ବ ମୂର୍ତ୍ତିଲୀଳାର କାରଣ ପଚାରି ଜାଣିବା ନିମନ୍ତେ ନାରଦ ବ୍ରହ୍ମାଙ୍କ ନିକଟକୁ ଗଲେ । ବ୍ରହ୍ମାଙ୍କୁ ପ୍ରଣାମ କରି ଉତ୍କଣ୍ଠିତ ଚିତ୍ତରେ କହିଲେ—'ପିତୃଦେବ ! ଆଜ ମୁଁ ଗୋଲୋକରେ ଗୋଟିଏ ଅଦୃଷ୍ଟପୂର୍ବ ଦୃଶ୍ୟ ଦେଖି ଆସିଛି । ନାରାୟଣ ସ୍ୱୟଂ ଗୋଟି ବଦନ ମାନବମୂର୍ତ୍ତି ଏବଂ ଲକ୍ଷ୍ମୀ ମାନବୀରୂପ ଧରି ବସିଛନ୍ତି । ଏହାର କାରଣ କଣ ?'

ଏ କଥା ଶୁଣି ବ୍ରହ୍ମା ଅତିରିକ୍ତ ଆଶ୍ଚର୍ଯ୍ୟରେ କିଛି କ୍ଷଣ ନିର୍ବାକ୍ ହୋଇ ବସିଲେ । ସେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କର ଏ ଅଦ୍ଭୁତ ଲୀଳା-ଖେଳାର କାରଣ ଠଉରାଇ ପାରିଲେ ନାହିଁ । କହିଲେ, ନାରଦଙ୍କ ସନ୍ଦେହଭଞ୍ଜନ ତାଙ୍କର ଶକ୍ତି-ବହିର୍ଭୂତ । ସେ ଜାଣନ୍ତି, ମହାଯୋଗୀ ମହାଦେବ ତ୍ରିକାଳଜ୍ଞ । ତାଙ୍କର ଦୃଢ଼ ବିଶ୍ୱାସ, ଲକ୍ଷ୍ମୀନାରାୟଣଙ୍କର ସେହି ଅପୂର୍ବ ରୂପଧାରଣର କାରଣ ମହାଦେବ ଅବଶ୍ୟ କହି ପାରିବେ । ସୁତରାଂ ସେ ନାରଦଙ୍କୁ ସଙ୍ଗେ ନେଇ କୈଳାସ ଶିଖରକୁ ଗଲେ । ଦେଖିଲେ, ମହାଦେବ ଓ ପାର୍ବତୀ ଏକାସନରେ ଆସୀନ । ଦୁହେଁ ହରପାର୍ବତୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସଦାଶିବଙ୍କ ଆନନ୍ଦ କହିଲେ ନ ସରେ ! ସେ ବ୍ରହ୍ମା ଓ ନାରଦଙ୍କୁ ଉପଯୁକ୍ତ ଆସନ ଦେଇ ଆଗମନର କାରଣ ଜିଜ୍ଞାସା କଲେ

ବ୍ରହ୍ମା ଓ ନାରଦ ବିନୀତ ଭାବରେ ଲକ୍ଷ୍ମୀ ନାରାୟଣଙ୍କର ନୂତନ ରୂପ ଧାରଣ ସମ୍ବାଦ ଜଣାଇ ତାହାର କାରଣ ଓ ଅର୍ଥ ପଚାରିଲେ । ଏହା



ବାଲ୍ମୀକି-ଆଶ୍ରମରେ ଲବକୁଶଙ୍କର ରାମାୟଣଗାନ ଶିକ୍ଷା

ଶୁଣିବା ମାତ୍ରକେ, ଅପୂର୍ବ ପ୍ରେମ ଓ ଆହ୍ଲାଦରେ ମହାଦେବଙ୍କ ବଦନମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା, ତାଙ୍କ ଅଧରପ୍ରାନ୍ତରେ ମନ୍ଦହାସର ତରଙ୍ଗ ନୃତ୍ୟ କରିବାକୁ ଲାଗିଲା । ସେ ଭକ୍ତି ଗଦ୍‌ଗଦ କଣ୍ଠରେ କହିଲେ— 'ମାନବଙ୍କୁ ମହା ପାପରୁ ଉଦ୍ଧାର କରିବା ସକାଶେ ଭଗବାନଙ୍କର ଏହି ଲୀଳା । ତ୍ରେତାଯୁଗରେ ଏହି ରାମରୂପ ଧରି ଭଗବାନ ପୃଥିବୀରେ ଲୀଳା କରିବେ । ସେ ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ—ଏହି ଚାରିଭାଇ ହୋଇ ତିନି ଜନନୀଙ୍କ ଗର୍ଭରେ ଜନ୍ମ ଗ୍ରହଣ କରିବେ । ସେମାନେ ହେବେ ସୂର୍ଯ୍ୟବଂଶର ରାଜା ଦଶରଥଙ୍କ ସନ୍ତାନ । ଲକ୍ଷ୍ମୀ ସୀତା ହୋଇ ଜନ୍ମ ନେବେ ପୃଥିବୀ ଗର୍ଭରେ । କିନ୍ତୁ ସେ ମିଥିଳାର ରାଜର୍ଷି ଜନକଙ୍କର କନ୍ୟା ହୋଇ ତାଙ୍କ ଗୃହରେ ରହିବେ । ସୀତାଙ୍କୁ ବିବାହ କରିବେ ରାମ । ମର୍ତ୍ତ୍ୟଲୋକରେ ରାବଣ ନାମକ ମହା ପ୍ରତାପଶାଳୀ, ଦୁର୍ଦ୍ଦାନ୍ତ ରାକ୍ଷସ ଜନ୍ମଗ୍ରହଣ କରିବ । ସେ ଦେବତା, ଋଷି ଓ ବ୍ରାହ୍ମଣମାନଙ୍କୁ ଭୟଙ୍କର ପୀଡ଼ା ଦେବ । ତାହାର ଅତ୍ୟାଚାର, ଉପଦ୍ରବରେ କ୍ରୁଦ୍ଧ ହୋଇ ଭଗବାନ ରାମ ତାହାକୁ ସବଂଶ ନଷ୍ଟ କରିବେ ।'

ମହାଦେବଙ୍କର କଥା ଶୁଣି ବ୍ରହ୍ମା ଓ ନାରଦଙ୍କର ଅନ୍ତର ଜାଣିବାର ଇଚ୍ଛା ବଳବତୀ ହୋଇ ଉଠିଲା । ଦୁହେଁ ଶ୍ରୀରାମଲୀଳାର ସମସ୍ତ ବିଷୟ ଏବଂ ତାହାର ପ୍ରକୃତ କାରଣ କହିବା କାରଣ ମହାଦେବଙ୍କୁ ଅନୁରୋଧ କଲେ ।

ମହାଦେବ— କହୁଛି, ଜୀବଙ୍କୁ ଘୋର ପାପରୁ ଉଦ୍ଧାର କରିବା ନିମନ୍ତେ ଭଗବାନ 'ରାମ-ଅବତାର' ଧାରଣ କରିବେ । ମୁଖରେ ଥରେ ମାତ୍ର 'ରାମନାମ' ଉଚ୍ଚାରଣ କଲେ, ଏକ ନିମିଷ ମଧ୍ୟରେ ଲକ୍ଷ ଜନ୍ମର ସକଳ ପାପ କ୍ଷୟ ହୋଇ ଯିବ । 'ରାମ' ନାମର

ଏପରି ଶକ୍ତି ! ଅତଏବ ପୃଥିବୀରେ ଏହି ପବିତ୍ର ନାମ ପ୍ରଚାର କରିବା ସକାଶେ ଭଗବାନଙ୍କର ଏଇ ଲୀଳା ଖେଳା ।

ବ୍ରହ୍ମା:—ଏଭଳି ମହାପାପୀ କିଏ କେଉଁଠି ଅଛି ପ୍ରଭୁ ?

ମହାଦେବ ସହାସ୍ୟ ବଦନରେ ଉତ୍ତର କଲେ—'ପୃଥିବୀରେ ଜଣେ ଋଷିପୁତ୍ର ଅଛି— ତାହାର ନାମ ରତ୍ନାକର । ପରମ ପବିତ୍ର ଋଷି ଗୃହରେ, ମହା ତପସ୍ୱୀ ଚ୍ୟବନଙ୍କ ଔରସରେ ଜନ୍ମଲାଭ କରି ସୁଦ୍ଧା, ଏହି ନରାଧମ ରତ୍ନାକର ଚୌର୍ଯ୍ୟ, ଲୁଣ୍ଠନ, ନରହତ୍ୟା ବ୍ୟବସାୟ କରୁଅଛି । ସେ କେତେ ସହସ୍ର ବ୍ରାହ୍ମଣବଧ, ଗୋବଧ ଓ ସ୍ତ୍ରୀବଧ ଯେ କରିଛି ତାହାର ସଂଖ୍ୟା ନାହିଁ । ଏକମାତ୍ର 'ରାମ' ନାମ ଭିନ୍ନ ଅନ୍ୟ କୌଣସି ଉପାୟରେ ରତ୍ନାକରର ଘୋର ପାପ କ୍ଷୟ ହେବ ନାହିଁ । ତୁମେ ଦୁହେଁ ଯାଇ ତାହାକୁ 'ରାମ' ନାମ ମହାମନ୍ତ୍ର ଦେଇ ପାପରୁ ମୁକ୍ତ କର ।'

ବ୍ରହ୍ମା ଓ ନାରଦ ବିସ୍ମିତ ହୋଇଗଲେ । ରାମନାମର ଶକ୍ତି ଓ ମହିମା ପରୀକ୍ଷା କରିବା ପାଇଁ ରତ୍ନାକରଚୋର ନିକଟକୁ ଯିବାକୁ ପ୍ରସ୍ତୁତ ହେଲେ । ମହାଦେବଙ୍କ ମୁଖରୁ ରାମାୟଣ ଚରିତ ସୁବିସ୍ତୃତ ଭାବରେ ଶୁଣି ବିଦାୟ ନେଇ ପୃଥିବୀକୁ ଆସିଲେ । ବ୍ରହ୍ମା ବୃଦ୍ଧସନ୍ନ୍ୟାସୀ ଏବଂ ନାରଦ ଯୁବକ ସନ୍ନ୍ୟାସୀ ରୂପ ଧାରଣ କରି ରତନଚୋରର ଅରଣ୍ୟରେ ପ୍ରବେଶ କଲେ । ଦୁହେଁ ମହାଦେବଙ୍କ ଆଦେଶ କ୍ରମେ ନିଜର ଅଧ୍ୟାତ୍ମିକ ପ୍ରଭାବରେ କିପରି ଦସ୍ୟୁ ରତ୍ନାକରଙ୍କର ନାସ୍ତିକତା ନଷ୍ଟ କରିବାକୁ, ତାଙ୍କ ମନରେ ଭାବାନ୍ତର ଆଣିବାକୁ ଚେଷ୍ଟା କଲେ, ତାହା ପୂର୍ବବର୍ତ୍ତୀ ପରିଚ୍ଛେଦରେ ବିବୃତ ।

—୦—

୭

ରତ୍ନାକର ସନ୍ନ୍ୟାସିମାନଙ୍କ ଉପଦେଶରେ ନିଜ ପଲ୍ଲୀକୁ ଯାଇ ପ୍ରଥମରେ ଭିଲ ଅନୁଚରଗଣଙ୍କୁ ଡାକି କହିଲେ,—'ମୁଁ ପ୍ରତିଦିନ ମନୁଷ୍ୟ ମାରି ଧନ ବସ୍ତ୍ର, ଅନ୍ୟାନ୍ୟ ଜିନିଷ ପତ୍ର ଲୁଟି କରି ଆଣେଁ, ତୁମମାନଙ୍କୁ ଦିଏଁ । ସେଥିରେ ତୁମମାନଙ୍କର ଉଦରପୂରଣ ହୋଇଥାଏ । ଆଚ୍ଛା କହ—ମୁଁ ପ୍ରତ୍ୟହ ଏପରି ଯେଉଁ ମହାପାପ କରୁଛି, ତୁମେମାନେ ତାହାର କେତେ ଭାଗ ନେବ ?'

ସର୍ଦ୍ଦାରଙ୍କ ମୁଖରୁ ଆଜି ନୂତନ କଥା ଶୁଣି ଭିଲମାନେ ଆଶ୍ଚର୍ଯ୍ୟ ହୋଇ ଗଲେ । ଜଣେ ସାହସରେ ଉତ୍ତର କଲା—'ତୁମେ ନିଜ ସୁଖ ନିମନ୍ତେ ଭିଲ କନ୍ୟାକୁ ବିବାହ କରି ଭିଲ ହୋଇଅଛ । ଭିଲମାନଙ୍କ ଉପରେ ଆର୍ଯ୍ୟରାଜା ଯେଉଁ ଅତ୍ୟାଚାର କରୁଛି, ତାହା ବିରୁଦ୍ଧରେ ଲଢ଼ାଇ କରିବା ତୁମ ପକ୍ଷରେ ସ୍ୱାଭାବିକ । ଆର୍ଯ୍ୟ ସହିତ ଲଢ଼ାଇ କରି ଜଗତକୁ ଦେଖାଇବାକୁ ଚାହଁ ଯେ, ରତ୍ନାକର ପ୍ରାଣପଣେ ଭିଲ ଜାତିର ଉଦ୍ଧାର କରୁଛି । ତୁମର ନିଜ ବାହାଦୁରୀ, ପ୍ରଶଂସା ପାଇଁ ପ୍ରତି ଦିନ ମହାପାପ କରୁଛ । ଏଥିରେ ତୁମର ସ୍ୱାର୍ଥ ଅଛି । ଏଣୁ ତୁମେ ଯେଉଁ ପାପ କରୁଛ, ତାହା କେବଳ ତୁମର—ଆମର ନୁହେ । ଆମେମାନେ ବ୍ୟକ୍ତିଗତ ଭାବରେ ଯେଉଁ ପାପ କରୁଁ, ତାହା ଆମମାନଙ୍କୁ ଲାଗିବ ।' ସମସ୍ତେ ଏହି କଥା କହିଲେ ।

ରତ୍ନାକରଙ୍କ ହୃଦୟ ଗଭୀର ବିଷାଦରେ ପୂର୍ଣ୍ଣ ହୋଇଗଲା । ପରେ ସେ ଉମାଜୀ ଓ ତାହାର ପତ୍ନୀ ନିକଟରେ ଯାଇ କହିଲେ, —'ମୋ ମନରେ ଗୋଟିଏ ସନ୍ଦେହ ଜାତ ହୋଇଅଛି, ବୁଝାଇପାରିବ ? ମୁଁ ପ୍ରତ୍ୟହ

ତୁମ ଦୁହିଁଙ୍କର ଉଦର ପୂରଣ ପାଇଁ ଯେଉଁ ପାପ କରେଁ, ତାହାର ଫଳ ମୁଁ ଏକଲା ଭୋଗ କରିବି ନା ତୁମେମାନେ ବି ଭୋଗ କରିବ ?”

ଉମାଜୀ ଓ ତାହାର ପତ୍ନୀ ଆଶ୍ଚର୍ଯ୍ୟ ହୋଇଗଲେ । ଉମାଜୀ ବିରକ୍ତି ସହ ଉତ୍ତର କଲା—‘ତୁମର ପ୍ରଶ୍ନ ଯେ ଏକାବେଳକେ ନୂତନ, ବିଚିତ୍ର ! କାହିଁ, ତୁମର ଉପାର୍ଜ୍ଜନରେ ତ ଆମେ ଦୁହେଁ ପ୍ରାଣ ଧାରଣ କରୁ ନାହୁଁ । କଠିନ ପରିଶ୍ରମରେ ମୁଁ ଯାହା ସଞ୍ଚିତ କରି ରଖିଛି ସେଥିରେହିଁ ଆମର ଜୀବିକା ଚଳୁଥାଏ । ତୁମ ପରିଶ୍ରମ, ଉପାର୍ଜ୍ଜନ ଉପରେ ଆମମାନଙ୍କର ଉଦରପୂରଣ ଆଦୌ ନିର୍ଭର କରେ ନାହିଁ । ଏ ପାପ କରିବା ସକାଶେ, ତୁମକୁ ଏଠାରୁ କେହି ବରଣ କରି ଆଣି ନାହିଁ । ତୁମ ପାପ ତୁମକୁହିଁ ଲାଗିବ ।” ଉମାଜୀର ସ୍ତ୍ରୀ କଣ୍ଠନ୍ କ୍ରୁଦ୍ଧ ସ୍ୱରରେ କହିଲା—‘ଏ କଥା ତୁମକୁ କିଏ ଶିଖାଇ ଦେଲା ରତନ ? ତୁମକୁ କନ୍ୟାଦାନ କରି ଏଠାରେ ଆଶ୍ରୟ ଦେବାର ଫଳ କଣ ତେବେ ଏଇଆ ? ପୁତ୍ରର ପାପରେ ଜନ୍ମଦାତା ପିତା ମାତା ବି ଭାଗୀ ହୋଇ ପାରନ୍ତି ନାହିଁ । ନିଜର ସୁଖ ପାଇଁ ମାତଙ୍ଗୀକି ପସନ୍ଦ କରିଛ—ନିଜର ବାହାଦୁରୀ ପାଇଁ ଏ ପାପକର୍ମରେ ମାତିଛ । ତୁମ ପାପର ଫଳ ଆମେ ଭୋଗ କରିବୁଁ କିଆଁ ? ବେଶ୍ ବୁଦ୍ଧି ତ !”

ରତ୍ନାକରଙ୍କ ଦୁଃଖ ଓ ବିସ୍ମୟର ମାତ୍ରା ବୃଦ୍ଧି ପାଇଲା । ଘୃଣାରେ ସେଠାରୁ ଚାଲି ଯାଇ ମାତଙ୍ଗୀକୁ ଏ ପ୍ରଶ୍ନ ପଚାରିବାକୁ ପ୍ରସ୍ତୁତ ହେଲେ । ତାଙ୍କର ମନେ ହେଲା, ମାତଙ୍ଗୀ ତାଙ୍କୁ ଏପରି ହତାଶ କରିବ ନାହିଁ । ତାଙ୍କର ଦୃଢ଼ ବିଶ୍ୱାସ, ଅର୍ଦ୍ଧାଙ୍ଗିନୀ ମାତଙ୍ଗୀ ତାଙ୍କ ପାପଫଳର ଅନ୍ତତଃ ଏକ ଅର୍ଦ୍ଧାଂଶ ଭୋଗ କରିବାକୁ ରାଜି ହେବ । ତାଙ୍କ ମନରେ ଆଶାର ସଞ୍ଚାର ହେବାକୁ ଲାଗିଲା । ସେ ଯାଇ ମାତଙ୍ଗୀକୁ କହିଲେ—‘ସୁନ୍ଦରି ! ଆଜି ଗୋଟିଏ ନୂଆ ପ୍ରଶ୍ନ ପଚାରିବାକୁ ଆସିଛି । ଉତ୍ତର ପାଇ

ପାରିବ ତ ? ମାତଙ୍ଗୀ ମଦନଦାସ ସହ କହିଲେ—"କି ପ୍ରଶ୍ନ ? ସେ ଦିନ ତମସା ତଟରେ ଯେଉଁ ପ୍ରଶ୍ନ ପଚାରିଥିଲ ସେପରି ?"

ରତ୍ନାକର—ନା ସେପରି ନୁହେ । ସେ ପ୍ରଶ୍ନ ତ ଥିଲା ଅଶାର, ବର୍ତ୍ତମାନ ପ୍ରଶ୍ନ କିନ୍ତୁ—

ମାତଙ୍ଗୀ—କଥାଟା ଚୋଟ ଦେଉଛ ଯେ । ଅଚ୍ଛା ପଚାର ।

ରତ୍ନାକର—ତୁମେ ଜାଣ, ମୁଁ ପ୍ରତ୍ୟହ ଲୁଣ୍ଠନ, ନରହତ୍ୟା ଇତ୍ୟାଦି ମହା ପାପ କରେଁ । ଅଥଚ ଜାଣ ଯେ, ମୋର ଉପାର୍ଜିତ ଧନରେହିଁ ତୁମେ ଜୀବନ ଧାରଣ କରୁଛ । ମୋ ପାପଫଳର କେତେକାଂଶ ତୁମେ ଭୋଗ କରିବ ତ ?

ମାତଙ୍ଗୀର ଅଧର ପ୍ରାନ୍ତରୁ ମଦନହାସ କ୍ରମେ ଅନ୍ତର୍ହିତ ହୋଇଗଲା, ତାହାର ମୁଖ ମଳିନ ଓ ଗମ୍ଭୀର ହୋଇ ଉଠିଲା । କହିଲେ—"ଅଦ୍ଭୁତ ପ୍ରଶ୍ନ ଗୁଣମଣି ! ତୁମେ ଯେତେବେଳେ ମୋତେ ପତ୍ନୀରୂପେ ଗ୍ରହଣ କରୁଛ, ମୋର ରକ୍ଷଣ, ଜୀବନ ଧାରଣ ପାଇଁ ତୁମେ ଦାୟୀ—ମୋତେ ପୋଷିବାକୁ ତୁମେ ଧର୍ମତଃ ବାଧ୍ୟ । ମୁଁ ତୁମର ଧର୍ମପତ୍ନୀ, ଅର୍ଦ୍ଧାଙ୍ଗିନୀ—ତୁମ ପାପ ପୁଣ୍ୟର ଅର୍ଦ୍ଧ ଭାଗ ନେବି ସତ । ତେବେ ମୋର ଭରଣ-ପୋଷଣ ପାଇଁ ତୁମେ କରିବା ପାପର ଭାଗ ମୁଁ କିଛି ନେବି ନାହିଁ—ଅନ୍ୟାନ୍ୟ ଉଦ୍ଦେଶ୍ୟରେ ଯେଉଁ ପାପ ପୁଣ୍ୟ କର, ତାହାର ଫଳ ଭୋଗ କରି ପାରେଁ । ମୋତେ ବିବାହ କରିବା ସଙ୍ଗେ ସଙ୍ଗେ ମୋତେ ରକ୍ଷା କରିବା ଭାର ବହନ କରି ସାରିଛ । ମୋର ରକ୍ଷଣ ପୋଷଣ ତୁମରି ପ୍ରଧାନ କର୍ତ୍ତବ୍ୟ । ମୁଁ ତୁମର ଏ ପାପର ଅଂଶ ଗ୍ରହଣ କରିବି ନାହିଁ ।"

ରତ୍ନାକରଙ୍କ ମନରେ ଯେଉଁ ସାମାନ୍ୟ ଆଶା ଜାଗ୍ରତ ହୋଇଥିଲା, ତାହା ଏକାବେଳକେ ନିର୍ମୂଳ ହୋଇଗଲା । ପ୍ରତ୍ୟହ ସେ ଯେଉଁ ଭୟଙ୍କର ପାପ କରୁଥିଲେ ସେ ସବୁ ଗୋଟିକ ପରେ ଗୋଟିଏ ତାଙ୍କର

ମନଶ୍ଚକ୍ଷୁ ଆଗରେ ଆସି ନୃତ୍ୟ କରିବାକୁ ଲାଗିଲା । ସେହି ସମସ୍ତ ଘୋର ପାପ ଫଳରେ ତାଙ୍କର ଯେ ମହା ଦୁର୍ଗତି ଘଟିବ ତାହା ଭାବି ତାଙ୍କ ପ୍ରାଣ କମ୍ପିତ ହୋଇ ପଡ଼ିଲା । ରତ୍ନାକର ମାତଙ୍ଗୀ ନିକଟରୁ ଚାଲିଯାଇ କୁଟୀର ଗବାକ୍ଷ ସନ୍ନିଧାନରେ ଠିଆ ହେଲେ । ଗବାକ୍ଷ ମାର୍ଗରେ ଆକାଶ, ଅରଣ୍ୟ, ପ୍ରାନ୍ତର, ନଦୀ ଦେଖା ଯାଉ ଥିଲା । ସେ ମହା ଶୂନ୍ୟକୁ ଅନାଇଁ ଠିଆ ହେଲେ । ମାତଙ୍ଗୀ ନତ ମସ୍ତକରେ ବସି ରହିଲା ।

ରତ୍ନାକରଙ୍କର ବୋଧ ହେଲା, ଆକାଶ ଯେପରି ଅରଣ୍ୟ ଉପରକୁ କ୍ରମଶଃ ଓହ୍ଲାଇ ଆସୁଛି । ଆକାଶ ଯେତିକି ଓହ୍ଲାଇ ଆସୁଛି, ପୃଥିବୀ ସେତିକି ତଳକୁ ଖସି ଯାଉଛି । ଦୂରରେ ପର୍ବତମାଳା ମସ୍ତକ ଉନ୍ନତ କରି ଆକାଶକୁ ଧରି ରଖିବାକୁ ଚେଷ୍ଟା କରୁଛି । ଆକାଶ ବାଧା ବନ୍ଧ ମାନୁ ନାହିଁ—ପୃଥିବୀକୁ ଦଳି ପେଷି ରସାତଳରେ ନେଇ ପକାଇବାକୁ ଆରମ୍ଭ କରୁଛି । ଶେଷରେ ପୃଥିବୀ ଅପସାରିତ ହୋଇଗଲା—ପର୍ବତମାଳା କେଉଁଆଡ଼େ ବିଲୀନ ହୋଇଗଲା । ଆକାଶ ତଳେ ରହିଲେ ରତ୍ନାକର ଏକାକୀ । ସେ ଯେଉଁ ଦିଗକୁ ଚାହାନ୍ତି, ସେ ଦିଗରେ ଆକାଶ –ଧୂମ୍ରକାୟ ଦୀପ୍ତିହୀନ ଅନନ୍ତ ଅସୀମ ଆକାଶ । ଅନୁତପ୍ତ ରତ୍ନାକର ଆଶ୍ରୟ ଖୋଜିଲେ, ପାଇଲେ ନାହିଁ । ତାଙ୍କର ଦୃଷ୍ଟି ରୁଦ୍ଧ ହେଲା, ଶ୍ୱାସ ବନ୍ଦ ହୋଇଗଲା ।

କିଛି କ୍ଷଣ ପରେ ରତ୍ନାକର ପ୍ରକୃତିସ୍ଥ ହେଲେ । ସମସ୍ତ ପାପକର୍ମ ମନେ ପଡ଼ିଯିବା ମାତ୍ରକେ ନିଜ ପ୍ରତି ତାଙ୍କର ଭୟଙ୍କର ଘୃଣା ଜାତ ହେଲା । ଭୟ, ଦୁଃଖ ଓ ଲଜ୍ଜାରେ ତାଙ୍କର ସର୍ବାଙ୍ଗ ଥରହର ହେବାକୁ ଲାଗିଲା । ସେ ଅତିଶୟ ଘୃଣା ଓ ବିରକ୍ତିରେ ହସ୍ତର ଲୌହ ମୁଦ୍ଗର ତଳେ ଫିଙ୍ଗି ଦେଇ, ମାତଙ୍ଗୀକୁ ଆଉ କିଛି ନ କହି ଧୀରେ ଧୀରେ

ସେ କକ୍ଷରୁ ନିଷ୍କ୍ରାନ୍ତ ହେଲେ । କୌଣସି ପ୍ରକାରେ ସେ ନିଜ ମନକୁ ଆଶ୍ୱସ୍ତ କରି ପାରିଲେ ନାହିଁ । କକ୍ଷରୁ ପାଦ ବାହାର କରିବା କ୍ଷଣି ରତ୍ନାକର ଦୀର୍ଘ ନିଶ୍ୱାସ ତ୍ୟାଗ କରି ମନେ ମନେ କହିଲେ—'ଅହା, ମାତଙ୍ଗୀ ମୋର ଆଶା ସବୁ ଭସ୍ମ କରି ପକାଇଲା । ହେଲା—ଚିନ୍ତା କରିବାର କାରଣ ନାହିଁ । ଭଗବାନ ଯାହା କରନ୍ତି, ମଙ୍ଗଳ ପାଇଁ ।'

ପରେ ରତ୍ନାକର ଭୂଗର୍ଭ କକ୍ଷକୁ ଓହ୍ଲାଇ ମଦନ ଓ ରାଜକୁମାରଙ୍କର ବନ୍ଧନ ମୋଚନ କରିଦେଲେ । ସେ ହାତ ଯୋଡ଼ି ଅଶ୍ରୁପୂର୍ଣ୍ଣ ନୟନରେ ଭଗ୍ନ କଣ୍ଠରେ ସେ ଦୁହିଁଙ୍କୁ କହିଲେ—'ସେନାପତେ ! ରାଜକୁମାର ! ଦୁଇ ଜଣ ସନ୍ନ୍ୟାସୀ ଆସି ମୋ ମନରେ ଭାବାନ୍ତର ଆଣିଛନ୍ତି । ମୁଁ ନିଜର ପ୍ରକାଣ୍ଡ ଭୁଲ ବୁଝି ପାରୁଛି । ବର୍ତ୍ତମାନ ମୁଁ ଅନୁତପ୍ତ । ମୁଁ ତୁମମାନଙ୍କ ପ୍ରାଣରେ ତୀବ୍ର ଯନ୍ତ୍ରଣା ଦେଇଛି—କ୍ଷମା କର । ମୋ ଭାବ-ପରିବର୍ତ୍ତନ ସମ୍ବାଦ ରାଜାଙ୍କୁ, ରାଜକର୍ମଚାରିଗଣଙ୍କୁ, ସମସ୍ତ ରାଜ୍ୟବାସୀଙ୍କୁ ଜଣାଇବ । ମୋତେ ସର୍ବାନ୍ତଃକରଣରେ କ୍ଷମା କରିବା ପାଇଁ ସେମାନଙ୍କୁ କହିବ ।' ମଦନ ଓ ରାଜପୁତ୍ର ଅତିଶୟ ବିସ୍ମୟରେ ଅଧୀର ।

ରତ୍ନାକର ରାଜପ୍ରାସାଦରୁ ଯାହା ଯାହା ଚୋରାଇ ଆଣିଥିଲେ, ସେ ସବୁ ରାଜକୁମାରଙ୍କୁ ଫେରାଇ ଦେଲେ । ସେ ମଦନ ଓ ରାଜପୁତ୍ରଙ୍କୁ ସଙ୍ଗେ ଧରି ଉପରକୁ ଉଠିଲେ । ଯେଉଁ ଯୁବତୀମାନଙ୍କୁ ନୌକାରୁ ବଳାତ୍କାର ପୂର୍ବକ ଟାଣି ଆଣିଥିଲେ, ସେମାନଙ୍କୁ କହିଲେ—'ଆଜିଠାରୁ ତୁମେମାନେ ମୁକ୍ତ । ସେନାପତିଙ୍କ ସଙ୍ଗେ ନିଜ ସ୍ଥାନକୁ ବାହୁଡ଼ି ଯାଇ ପାର ।' ସେମାନଙ୍କୁ ସଙ୍ଗେ ନେଇ ମଧୁପୁରରେ ସେମାନଙ୍କ ଗୃହରେ ଛାଡ଼ି ଦେବା ସକାଶେ ରତ୍ନାକର ମଦନଙ୍କୁ ଅନୁରୋଧ କଲେ ।

ଉମାଜୀ, ତାହାର ପତ୍ନୀ, ମାତଙ୍ଗୀ ପ୍ରଭୃତିଙ୍କ ସମକ୍ଷରେ ରତ୍ନାକର ମଦନଙ୍କୁ କହିଲେ—'ସେନାପତି ମହାଶୟ, ରାଜଧାନୀରୁ ଏବଂ ରାଜ୍ୟର ଅନ୍ୟାନ୍ୟ ସ୍ଥାନରୁ ମୁଁ ଯେଉଁ ସମସ୍ତ ଧନରତ୍ନ ଲୁଣ୍ଠନ କରି ଆଣି ଏଠାରେ ସଂଚିତ ରଖିଛି, ସେ ସବୁ କିଛିସ ଲୋକ ପଠାଇ ଏଠାରୁ ନେଇ ଯାଅ—ଯାହାର ଯାହା ଚୋରି ଯାଇଛି ବୁଝି, ତାହାକୁ ସେ ପଦାର୍ଥ ଫେରସ୍ତ ଦିଅ । ନଗରର ଅସ୍ତ୍ର ଶସ୍ତ୍ର ସବୁ ନେଇ ଯାଅ ।'

ଏହା କହି ରତ୍ନାକର ଉମାଜୀର ଗୃହତ୍ୟାଗ କଲେ—ଥରେ ଦୁଇ ଦିନ ପାଇଁ ନୁହେଁ, ଚିର ଦିନ ପାଇଁ । ଏ ସମ୍ବାଦ ପଲ୍ଲୀ ତମାମ ରାଷ୍ଟ୍ର ହୋଇଗଲା । ପ୍ରାଣର ପ୍ରିୟ ରତ୍ନାକରଙ୍କୁ ଶେଷ ଥର ଦେଖିବା-ପାଇଁ ପଲ୍ଲୀବାସୀ ସକଳ ଭିଲ ଏକତ୍ରିତ ହୋଇ ପଲ୍ଲୀପ୍ରାନ୍ତ ଯାଏଁ ତାଙ୍କର ଅନୁସରଣ କଲେ । ଉମାଜୀ, ତାହାର ସ୍ତ୍ରୀ, ମାତଙ୍ଗୀ ଓ ଭିଲ-ମାନେ ରତ୍ନାକରଙ୍କୁ ପଲ୍ଲୀତ୍ୟାଗ, ଭିଲଜାତି ତ୍ୟାଗ ନ କରିବା କାରଣ କେତେ ଅନୁନୟ ବିନୟ କଲେ । ରତ୍ନାକର ସେଥିରେ କର୍ଣ୍ଣପାତ କଲେ ନାହିଁ—କୌଣସି ବାରଣ ମାନିଲେ ନାହିଁ । ରତ୍ନାକର ଯେଉଁ ପଲ୍ଲୀରେ ଉଚ୍ଛୃଙ୍ଖଳ ପ୍ରଣୟୀ ରୂପେ ପ୍ରବେଶ କରିଥିଲେ, ଆଜି ସେ ଅନୁତପ୍ତ ବୈରାଗୀ ରୂପେ ସେହି ପଲ୍ଲୀ ଚିରକାଳ ସକାଶେ ପରିତ୍ୟାଗ କରୁଛନ୍ତି । ଉମାଜୀ ପ୍ରଭୃତି ସ୍ତମ୍ଭିତ,ବିସ୍ମିତ ଓ ଗଭୀର ମନୋବେଦନାରେ ଅଭିଭୂତ ହୋଇଗଲେ । ସେମାନଙ୍କୁ ଜୀବନରେ କେବେ ବିସ୍ମୟ ଏପରି ଆକ୍ରମଣ କରି ନ ଥିଲା ।

ମଦନ ରାଜକୁମାର ଓ ଯୁବତୀମାନଙ୍କୁ ସଙ୍ଗେ ଘେନି ପ୍ରସନ୍ନ ବଦନରେ ଅଥଚ ହୃଦୟରେ ଭିଲ ପଲ୍ଲିରୁ ପ୍ରସ୍ଥାନ କଲେ । ଭୈରବ କେତେକ ଜଣ ସୈନିକଙ୍କ ସଙ୍ଗେ ରାଜକୁମାରଙ୍କ ସନ୍ଧାନରେ ବାହାରି-ଥିଲେ । ମାର୍ଗରେ ସେମାନଙ୍କୁ ଦେଖି ମଦନ ରତ୍ନାକରଙ୍କର ଆକସ୍ମିକ

ଅନୁତାପ ଓ ବୈରାଗ୍ୟୋଦୟ କଥା ଶୁଣାଇଲେ । ଭୈରବ ଓ ସୈନିକ-ଗଣ ବିସ୍ମୟରେ ବୁଡ଼ି ଗଲେ । ସମସ୍ତେ ଆନନ୍ଦରେ ନଗରକୁ ପ୍ରତ୍ୟାବୃତ୍ତ ହୋଇ ରାଜା, ମନ୍ତ୍ରୀ ପ୍ରଭୃତିଙ୍କୁ ଏ ସୁସମ୍ବାଦ ଜଣାଇଲେ । ନଗର-ବାସିଗଣ, ରାଜ୍ୟର ଲୋକେ ଏ ଖବର ପାଇ ଏକାବେଳକେ ଆଶ୍ଚର୍ଯ୍ୟ, ସଙ୍ଗେ ସଙ୍ଗେ ଆଶ୍ୱସ୍ତ ହୋଇଗଲେ । ସମସ୍ତଙ୍କର ଆଶଙ୍କା, ଦୁଶ୍ଚିନ୍ତା, ଅଶାନ୍ତି ଦୂର ହେଲା ।

—

ରତ୍ନାକର ଭୟରେ କଂପିତ, ଅନୁତାପରେ ଅସ୍ଥିର ହୋଇ ପାଗଳ ପରି ବ୍ରହ୍ମା ଓ ନାରଦ ଥିବା ସ୍ଥାନ ଅଭିମୁଖରେ ଅଗ୍ରସର ହେବାକୁ ଲାଗିଲେ । ତାଙ୍କ ଦୃଷ୍ଟି ଆଉ କେଉଁ ଆଡ଼େ ନାହିଁ -- ବନପଥରେ ନିବଦ୍ଧ । ତାଙ୍କ ଚକ୍ଷୁ ଲୋତକରେ ଛଳଛଳ, ମନ ପ୍ରାଣ ଅଶାନ୍ତିରେ ଆକୁଳ । ଯିବାବେଳେ ମାର୍ଗରେ ଦୁଇଜଣ ପଥିକ ରତ୍ନାକରଙ୍କୁ ହଠାତ୍ ଆଗରେ ଦେଖି ଭୟରେ ଥରିବାକୁ ଲାଗିଲେ । ଦୁହେଁ କାନ୍ଦି କାନ୍ଦି ଥରି ଥରି ରତ୍ନାକରଙ୍କ ଚରଣରେ ନିଜ ଜିନିସପତ୍ର ଥୋଇ ଦେଇ କହିଲେ--'ଏ ସବୁ ନେଇ ଯାଅ, ଆମକୁ ହତ୍ୟା କର ନାହିଁ । ଦୟା କରି ଜୀବନ ରଖ ।'

ରତ୍ନାକରଙ୍କର ଗତି ହଠାତ୍ ସ୍ଥଗିତ ହୋଇଗଲା — ତାଙ୍କର ଲୋତକଧାରା ଅଧିକ ବେଗରେ ବହିବାକୁ ଲାଗିଲା । କହିଲେ— 'ତୁମମାନଙ୍କର ଜିନିଷ କିମ୍ବା ଜୀବନ ନେବି ନାହିଁ । ନିର୍ଭୟ, ନିଶ୍ଚିନ୍ତ ହୋଇ ଚାଲି ଯାଅ ।' ଭୀତ ତ୍ରସ୍ତ ପଥିକଦ୍ୱୟ ନିର୍ବାକ୍ ହୋଇ ଚିନ୍ତା କଲେ — 'ଦସ୍ୟୁର ମୁଖରେ କୋମଳ କଥା, ଦୟାର ସୂଚନା ! ଅସମ୍ଭବ । ଏପରି କପଟ ବାକ୍ୟରେ ଲୁଣ୍ଠନ ସେ ତାର ଅଭ୍ୟସ୍ତ ।'

ରତ୍ନାକର—ମୋତେ ଅବିଶ୍ୱାସ କର ନାହିଁ । ସତ୍ୟ କହୁଛି—ମୋ ଭାବ ବଦଳିଛି, ମୋ ଜୀବନରେ ପୂର୍ଣ୍ଣ ପରିବର୍ତ୍ତନ ଆସିଛି । ନିର୍ଭୟ ଚିତ୍ତରେ ଯାତ୍ରା କର ।

ଏହା କହି ସେ ଅରଣ୍ୟର ଅନ୍ୟ ପଥରେ ଚାଲିବାକୁ ଲାଗିଲେ । ପଥିକ ଦୁହେଁ ପାପୀ ରତ୍ନାକରଙ୍କର ଏ ଅଭୟ ବାଣୀ, ଧୀର ସ୍ଥିର କଥା, ଶାନ୍ତ ସ୍ୱଭାବ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲେ । ସେମାନଙ୍କ ମନରୁ ଭୟ ବହୁ ପରିମାଣରେ ଦୂର ହେଲା—ପୂର୍ଣ୍ଣ ଭାବରେ ନୁହେ । ଗଣ୍ଠିଟି ଟେକି ଉଠାଇ ଗନ୍ତବ୍ୟ ମାର୍ଗରେ ସନ୍ଦେହଯୁକ୍ତ ହୃଦୟରେ ଅଗ୍ରସର ହେବାକୁ ଲାଗିଲେ—ବାରମ୍ବାର ପଛକୁ ଅନାଇଁ । ବନପଥ ଅତିକ୍ରମ କରିବା ପରେ ଦୁହେଁ ରଢନଭୟରୁ ସଂପୂର୍ଣ୍ଣରୂପେ ମୁକ୍ତି ପାଇଲେ ।

ରତ୍ନାକର କାତର ପ୍ରାଣରେ ସନ୍ନ୍ୟାସି ଦୁହିଁଙ୍କ ନିକଟକୁ ଧାଇଁ ଗଲେ । ସନ୍ନ୍ୟାସିବେଶରେ ବ୍ରହ୍ମା ଓ ନାରଦ ସେହି ସ୍ଥାନରେହିଁ ଠିଆ ହୋଇଥିଲେ । ରତ୍ନାକର ବ୍ରହ୍ମା ଓ ନାରଦଙ୍କ ଚରଣତଳେ ପଡ଼ି କାନ୍ଦି କାନ୍ଦି କହିଲେ—'ରକ୍ଷା କରନ୍ତୁ । ବୁଝିଲି, କେହି ମୋ ପାପର ଭାଗ ନେବେ ନାହିଁ । ଆପଣମାନେ ମୋର ଗୁରୁ—ମୋତେ ଦିବ୍ୟଜ୍ଞାନ ଦେଇଅଛନ୍ତି । ଅନୁଗ୍ରହପୂର୍ବକ ଏ ନରାଧମ ମହା ପାତକୀକୁ ପାପରୁ ଉଦ୍ଧାର କରନ୍ତୁ ।'

ନିଜର ସଂକଳ୍ପ ଓ ପ୍ରୟାସ ଫଳବତୀ ହେବାର ଦେଖି ପିତା ଓ ପୁତ୍ର ବିଶେଷ ଆନନ୍ଦ ଅନୁଭବ କଲେ । ଅନୁତପ୍ତ ରତ୍ନାକରଙ୍କର ବିନୟ ଓ ବ୍ୟାକୁଳତା ଦେଖି ଦୁହିଁଙ୍କ ମନରେ ଦୟାର ଉଦ୍ରେକ ହେଲା । ଦେଖିଲେ, ପୂର୍ବ ଦୁଷ୍କୃତ-ସ୍ମରଣରେ ରତ୍ନାକରଙ୍କ ଶରୀର କଣ୍ଟକିତ ହୋଇ ଯାଇଛି । ସେମାନେ ରତ୍ନାକରଙ୍କୁ ସେମାନଙ୍କର ପ୍ରକୃତ ପରିଚୟ

ଦେଲେ ଏବଂ ନିଜ ନିଜ ମୂର୍ତ୍ତି ଧାରଣ କରି ପ୍ରସନ୍ନ ମୁଖରେ ଜଣାଇଲେ ଯେ, ରତ୍ନାକରଙ୍କର ପରିତ୍ରାଣ ପାଇଁ ସେମାନେ ଆସିଛନ୍ତି । ବ୍ରହ୍ମା ତାଙ୍କୁ ତଳୁ ଉଠାଇ କହିଲେ—'ଆଉ ଭୟ ନାହିଁ ରତ୍ନାକର ! ବର୍ତ୍ତମାନ ତୁମକୁ ସକଳ ପାପ-ତାପ-ହାରୀ ମହାମନ୍ତ୍ର ଉପଦେଶ ଦେବି । ଯାଅ, ସ୍ନାନ କରି ଶୁଦ୍ଧ ହୋଇ ଆସ ।'

ରତ୍ନାକରଙ୍କ ପ୍ରାଣରେ ଆଶା ଉଦ୍‌ବୁଦ୍ଧ ହେଲା । ସେ ତତ୍‌କାଳ ନିକଟସ୍ଥ ପୁଷ୍କରିଣୀରେ ସ୍ନାନ କରି ଫେରିଲେ । ବ୍ରହ୍ମା ତାଙ୍କୁ ଆଲିଙ୍ଗନ କରି କହିଲେ—'ତୁମେ ଏଠାରେ ବସି ଏକ ଲୟରେ 'ରାମ ରାମ'—ଏ ମହାମନ୍ତ୍ର ଜପ କର । ତୁଳାରାଶି ଯେପରି ଅଗ୍ନିରେ ଭସ୍ମସାତ୍ ହୋଇଯାଏ, ତୁମର ସକଳ ପାପ ଏହି ପବିତ୍ର 'ରାମ' ନାମ ଜପରେ ଭସ୍ମୀଭୂତ ହେବ, ସନ୍ଦେହ ନାହିଁ ।'

ରତ୍ନାକର ପରମ ଆନନ୍ଦରେ ବ୍ରହ୍ମା ଓ ନାରଦଙ୍କୁ ପ୍ରଣାମ କରି ଅରଣ୍ୟର ସେହି ସ୍ଥାନରେ ବସି 'ରାମ-ରାମ' ଜପ କରିବାକୁ ଲାଗିଲେ । ବ୍ରହ୍ମା ଓ ନାରଦ ସନ୍ତୋଷରେ ସେଠାରୁ ଚାଲିଗଲେ । ରତ୍ନାକର-ଜୀବନର ପୁନରୁତ୍ଥାନର ସୂତ୍ରପାତ ହେଲା ।

—o—

୯୩୫

୪

ରତ୍ନାକର ବ୍ରହ୍ମାଙ୍କର ମନ୍ତ୍ରୋପଦେଶ ଗ୍ରହଣ କରି ଅରଣ୍ୟର ସେହି ସ୍ଥାନରେ ବସି ଅନାହାରରେ ଏକ ମନରେ ଏକ ପ୍ରାଣରେ ରାମ ନାମ ଜପ କରିବାକୁ ଲାଗିଲେ । ଏକ ମୁହୂର୍ତ୍ତ ବି ଉଠିଲେ ନାହିଁ କି ଶୋଇଲେ ନାହିଁ, ହଲିଲେ ନାହିଁ ଟଳିଲେ ନାହିଁ । ଅହୋରାତ୍ରି ପ୍ରସ୍ତର ମୂର୍ତ୍ତି ତୁଲ୍ୟ ବସି ଏକ ଭାବରେ ଏକ ଧ୍ୟାନରେ କେବଳ ଜପ କରିବାକୁ ଲାଗିଲେ— 'ରାମ—ରାମ—ରାମ' । ଦେଖୁଁ ଦେଖୁଁ ତାଙ୍କର ବାହ୍ୟଜ୍ଞାନ ଲୁପ୍ତ ହୋଇଗଲା ।

ଭୀମାଜୀ, ତାହାର ପତ୍ନୀ ମାତଙ୍ଗୀ ଓ ସକଳ ଭିଲ ସ୍ତ୍ରୀ ପୁରୁଷ ରତ୍ନାକରଙ୍କୁ ଦେଖିବାକୁ ଗଲେ । ଅଗ୍ନିଧ୍ୱଜ, ରାଜପୁତ୍ର, ମନ୍ତ୍ରିଗଣ, ସେନାପତିଗଣ, ସୈନିକମାନେ ଓ ରାଜ୍ୟର ସମସ୍ତ ପ୍ରଜା ତପସ୍ୟାନିରତ ରତ୍ନାକରଙ୍କ ନିକଟରେ ଯାଇ ଜୁଣ୍ଡ ହେଲେ । ସମସ୍ତେ ଦେଖିଲେ— ରତ୍ନାକରଙ୍କର ଚକ୍ଷୁଯୁଗଳ ନିମୀଳିତ; ଶରୀର ଅଚଳ ବଦନମଣ୍ଡଳ ଆଶା-ଆନନ୍ଦରେ ଉତ୍‌ଫୁଲ୍ଲ, ପ୍ରସନ୍ନ ମୁଖରେ ପବିତ୍ର ରାମନାମ-ଉଚ୍ଚାରଣ । ସମସ୍ତେ ନିଷ୍ଠାବାନ୍ ଋଷିକୁମାର ରତ୍ନାକରଙ୍କର ଜୀବନ୍ୟ ପରିବର୍ତ୍ତନରେ ଯେପରି ଆନନ୍ଦିତ ହୋଇଥିଲେ, ଆଜ ନିଷ୍ଠୁର ରତନଗେରର ଅଭାବନୀୟ ପବିତ୍ର ପରିବର୍ତ୍ତନରେ ସେପରି ବିସ୍ମିତ ହୋଇ ଫେରିଲେ । ରତ୍ନାକରଙ୍କର ପ୍ରଗାଢ଼ ତପସ୍ୟା ଆର୍ଯ୍ୟ ଓ ଅନାର୍ଯ୍ୟଗଣଙ୍କ ହୃଦୟରେ ଭାବାନ୍ତର ଆନୟନ କଲା । ରାଜଦଳ ଓ ଭିଲଦଳଙ୍କ ମଧ୍ୟରେ ପରସ୍ପର ସ୍ନେହ ସଦ୍‌ଭାବ ପୁନର୍ବାର ଜାଗ୍ରତ ହେଲା । ବିଦ୍ରୋହୀ ଭିଲମାନଙ୍କ ମନରେ ବୈରାଗ୍ୟୋଦୟ ହେଲା । ସେମାନେ ଲୁଣ୍ଠିତ ପଦାର୍ଥ ସବୁ ଆର୍ଯ୍ୟମାନଙ୍କୁ ଫେରାଇ ଦେଲେ ।

ମାତଙ୍ଗୀ ଯୋଗାସୀନ ପତିଙ୍କ ନିକଟରେ ଯାଇ କେତେ କାତର କ୍ରନ୍ଦନ କଲା, ପତ୍ନୀକୁ ଫେରି ଶାନ୍ତ ସରଳ ପୁଣ୍ୟ ପୂତ ଜୀବନ କଟାଇବା କାରଣ ତାଙ୍କୁ କେତେ କାକୁତି ମିନତି କଲା । ତାହାର ସକଳ ଚେଷ୍ଟା ବ୍ୟର୍ଥ ହେଲା—ତାହାର ବିକଳ ବିଳାପ, ସ୍ତବ ସ୍ତୁତି, ପ୍ରାର୍ଥନା ପ୍ରଣତି ସବୁ ବିଫଳ ହୋଇ ଗଲା, ଅଟଳପ୍ରତିଜ୍ଞ ଆତ୍ମବିସ୍ମୃତ ରତ୍ନାକରଙ୍କ କର୍ଣ୍ଣରେ ଆଦୌ ପ୍ରବେଶ କରି ପାରିଲା ନାହିଁ । ଶେଷରେ ମାତଙ୍ଗୀ ହତାଶ ହୋଇ ଫେରିଲା, ଚିରଦିନ ପାଇଁ ସ୍ୱାମୀ ହରାଇ ବସିଲା—ନିଜର ଉଦ୍ଦାମ ଯୌବନ ସାହାଯ୍ୟରେ, ନିଜର ପ୍ରେମ-ରସାଣିତ ଶରୀର-ସୌନ୍ଦର୍ଯ୍ୟ ବଳରେ ଯେଉଁ ହୃଦୟକୁ ଅପହରଣ କରି ଆଣିଥିଲା ସେହି ହୃଦୟ ଚିରକାଳ ପାଇଁ ହରାଇ ବସିଲା ।

ଦିନ ରାତି କଟିଗଲା, ମାସ ବର୍ଷ କଟିଗଲା — ରତ୍ନାକରଙ୍କର ରାମନାମ ଜପ ବରାବର ଚାଲିଛି. ସେହି ମହାମନ୍ତ୍ରୋଚ୍ଚାରଣ ଅବିରାମ ଗତିରେ ଚାଲିଛି । ଦେଖୁଁ ଦେଖୁଁ ଏକ ଶତ ବର୍ଷ ଏକ ହଜାର ବର୍ଷ ଚାଲିଗଲା, ଷାଠିଏ ହଜାର ବର୍ଷ ଚାଲିଗଲା -- ତଥାପି ତାଙ୍କର ରାମନାମ-ଧ୍ୟାନର ବିରାମ ନାହିଁ, ରାମନାମ-ଗାନର ବିଶ୍ରାମ ନାହିଁ । ଏକ ସ୍ଥାନରେ ଏକାସନରେ ବସି ଏତେ ସହସ୍ର ବର୍ଷ ଅଟଳ ତପସ୍ୟା କଲେ କେଉଁ ମାନବର ଶରୀର ଅକ୍ଷତ, ଅକ୍ଷୁଣ୍ଣ ରହିପାରେ ? ଉଇ ଝିର ରତ୍ନାକରଙ୍କ ଦେହର ସମସ୍ତ ମାଂସ ଖାଇଦେଲେ ତାଙ୍କର ସର୍ବାଙ୍ଗ ଉଇହୁଙ୍କାରେ ଢାଙ୍କି ହୋଇଗଲା । ଉଇହୁଙ୍କା ଭିତରେ ଅବଶିଷ୍ଟ ରହିଲା ତାଙ୍କର ଅସ୍ଥି-ପଞ୍ଜର ଓ ରାମନାମ-ଉଚ୍ଚାରଣ । ହୁଙ୍କାର ଉପରଭାଗ କୁଶ, କଣ୍ଟକ ଇତ୍ୟାଦି ଗୁଳ୍ମରେ ଆଚ୍ଛାଦିତ ହେଲା ।

ରତ୍ନାକରଙ୍କ ତପସ୍ୟାର ଷାଠିଏ ହଜାର ବର୍ଷ ବ୍ରହ୍ମାଙ୍କର ଏକ ମୁହୂର୍ତ୍ତ ସମାନ ହେଲା । ଏ ଷାଠିଏ ହଜାର ବର୍ଷ ପରେ ବ୍ରହ୍ମା

ରତ୍ନାକରଙ୍କୁ ଦେଖିବା ଉଦ୍ଦେଶ୍ୟରେ ଘଟନା ସ୍ଥଳକୁ ଗଲେ । ସେଠାରେ କିନ୍ତୁ ରତ୍ନାକରଙ୍କୁ ଦେଖି ପାରଲେ ନାହିଁ—ଶୁଣିଲେ ସେଇ ରାମନାମ-ଡାକ । ଚତୁର୍ଦ୍ଦିଗରେ ଦୃଷ୍ଟିପାତ କଲେ, କାହାକୁ ଦେଖି ପାରଲେ ନାହିଁ । କାନ ଡେରି ଠିଆ ହେଲେ । ଶୁଣିଲେ, କୁଶ-କଣ୍ଟକ-ଗୁଳ୍ମାବୃତ ଗୋଟିଏ ବଲ୍ମୀକ ମଧ୍ୟରୁ ରାମନାମ ଉଦ୍‌ଗୀତ ହେଉଅଛି । ହୁଙ୍କା ମଧ୍ୟରେ ରତ୍ନାକର ବସି ଯେ ଜପ କରୁଛନ୍ତି, ଏହା ବୁଝିବାକୁ ତାଙ୍କର ଆଉ ବାକୀ ରହିଲା ନାହିଁ । ମହା ଆନନ୍ଦରେ ସେ ବଲ୍ମୀକର କୁଶ, ଗୁଳ୍ମ ଇତ୍ୟାଦି ବାହାର କରଦେଲେ; ଦୁଇ ହସ୍ତରେ ଅତି ଯତ୍ନ ଓ ସତର୍କତା ସହ ଉଇହୁଙ୍କାଟି ଧୀରେ ଧୀରେ ଭାଙ୍ଗି ପକାଇଲେ । ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ରତ୍ନାକରଙ୍କ ଶରୀରର କୌଣସି ଅଂଶରେ ଚର୍ମ୍ମ ଓ ମାଂସ ନାହିଁ—ଅଛି କେବଳ କଙ୍କାଳ । ଅସ୍ଥିପଞ୍ଜରରୁ ରାମନାମଶବ୍ଦ ନିର୍ଗତ ହେବାର ଶୁଣିଲେ । ବୁଝିଲେ, ରାମନାମ ପ୍ରଭାବରେ ଦସ୍ୟୁ ରତ୍ନାକରଙ୍କର ସମସ୍ତ ପାପ କ୍ଷୟ ହୋଇଅଛି, ତାଙ୍କର ଅସ୍ଥି ପବିତ୍ର ହୋଇ ଉଠିଛି । ବ୍ରହ୍ମାଙ୍କ ସନ୍ତୋଷର ସୀମା ରହିଲା ନାହିଁ । ସେ ରତ୍ନାକରଙ୍କୁ ଡାକିଲେ—'ଉଠ ରତ୍ନାକର ।'



ବ୍ରହ୍ମାଙ୍କ ଆହ୍ୱାନରେ ରତ୍ନାକରଙ୍କର ଚୈତନ୍ୟ ଫେରି ଆସିଲା । ସେ ଚଞ୍ଚଳ ଉଠି ବ୍ରହ୍ମାଙ୍କ ଚରଣରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ବ୍ରହ୍ମା—ତୁମେ ବର୍ତ୍ତମାନ ସକଳ ପାପରୁ ମୁକ୍ତ ହୋଇଅଛ ।

ରତ୍ନାକର—ଆପଣ ଅନୁଗ୍ରହପୂର୍ବକ ରାମ ନାମ ଦେଇ ମୋତେ ମୁକ୍ତ କରଛନ୍ତି । ଆପଣଙ୍କ କୃପାରେ ଆଜ ମୋର ନୂତନ ଜନ୍ମ, ନୂତନ ଶରୀର ହୋଇଅଛି—ମୋ ଜନ୍ମ ସାର୍ଥକ, ଜୀବନ ଧନ୍ୟ ହୋଇଅଛି । ବର୍ତ୍ତମାନ ଆଦେଶ କଣ ?

ବ୍ରହ୍ମା:—ବଲ୍ମୀକ ମଧ୍ୟରେ ତୁମେ ନୂତନ ଜୀବନ ଲାଭ କରଅଛ । ଅତଏବ ଆଜଠାରୁ ତୁମର ନାମ ହେଲା 'ବାଲ୍ମୀକି' । ନିଷ୍ଠିନ୍ତ ହୋଇ ସର୍ବଦା ରାମନାମ ଜପ କର । ଯେଉଁ ରାମନାମ ବଳରେ ପାପରୁ ମୁକ୍ତ ହୋଇଅଛ, ସେଇ ରାମଚରିତକୁ ନେଇ ସାତକାଣ୍ଡ ରାମାୟଣ ରଚନା କର । ସରସ୍ୱତୀଙ୍କ ସାହାଯ୍ୟରେ ତୁମେ ସରସ ସୁନ୍ଦର କବିତା ଲେଖି ପାରିବ । ତୁମେ ଏ କବିତା ଛନ୍ଦରେ ଯେଉଁ ସମସ୍ତ କଥା ଶ୍ଳୋକରେ ଲେଖିବ, ଶ୍ରୀରାମ ଜନ୍ମ ଗ୍ରହଣ କରି ସେହି ସମସ୍ତ କାର୍ଯ୍ୟ କରିବେ । ତୁମର ରାମାୟଣ ଜଗତରେ ହେବ ପ୍ରଥମ ପ୍ରଧାନ କାବ୍ୟ, ମହା ପୁରାଣ ।

ଏହା କହି ସେ ରତ୍ନାକରଙ୍କ ଦେହରେ ହାତ ବୁଲାଇଲେ । ରତ୍ନାକରଙ୍କ ଦେହରେ ଶକ୍ତି ସଂଚାର ହୋଇଗଲା । ପରେ ବ୍ରହ୍ମା ରତ୍ନାକରଙ୍କ ମସ୍ତକ ଆଘ୍ରାଣ କରି, ଆଶୀର୍ବାଦ କରି ସ୍ୱସ୍ଥାନକୁ ଚାଲିଗଲେ ।

—:*:—

୫

ବାଲ୍ମୀକଙ୍କ କଙ୍କାଳରେ କ୍ରମଶଃ ମାଂସ ଓ ଚର୍ମ ଲାଗିଲା । ତାଙ୍କ ସର୍ବାଙ୍ଗରୁ ସ୍ୱର୍ଗୀୟ କାନ୍ତି ଫୁଟି ଉଠିଲା । କିଛି ଦିନ ପରେ ସେ ତମସା-ତୀରରେ ଗୋଟିଏ ପର୍ଣ୍ଣ କୁଟୀର ନିର୍ମାଣ କଲେ, ଆଶ୍ରମ ସ୍ଥାପନ କଲେ । ଭରଦ୍ୱାଜ ନାମକ ଜନୈକ ଋଷିକୁମାର ଦିନେ ହଠାତ୍ ବାଲ୍ମୀକଙ୍କର ସାକ୍ଷାତ୍ ଲାଭ କରି ତାଙ୍କର ପରିଚୟ ନେଉଥିଲେ, ନିଜ ପରିଚୟ ଦେଲେ । ବାଲ୍ମୀକି ତାଙ୍କ ଆଗରେ ନିଜ ଜୀବନ ଚରିତ ବର୍ଣ୍ଣନା କଲେ । ଭରଦ୍ୱାଜ ସେ ବର୍ଣ୍ଣନାରେ ମୁଗ୍ଧ, ଚକିତ ହୋଇ ବାଲ୍ମୀକି ମୁନିଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ସେ ଦିନ ଠାରୁ ଗୁରୁ ଶିଷ୍ୟ ଦୁହେଁ ସେହି ଆଶ୍ରମରେ ରହି ରାମନାମ ଜପରେ ଦିନ କଟାଇବାକୁ ଲାଗିଲେ ।

ବାଲ୍ମୀକି-ଆଶ୍ରମଟି ପରମ ରମଣୀୟ ନିର୍ଜନ ସ୍ଥାନ । ଚତୁର୍ଦ୍ଦିଗରେ ମହାରଣ୍ୟ । ତପୋବନଟି ରସାଳ ତାଳ, ଖର୍ଜ୍ଜୁରୀ, ପୂଗ, ପନସ, ନାରିକେଳ ଇତ୍ୟାଦି ବୃକ୍ଷରେ ପୂର୍ଣ୍ଣ । ନାନା ଶ୍ରେଣୀର ପୁଷ୍ପ ଲତାରେ ଶୋଭିତ । ଆଶ୍ରମଟି ଦିବାରାତ୍ରି ପବିତ୍ର ରାମନାମରେ ମୁଖରିତ—ଶାନ୍ତି ସତ୍ୟରେ ପରିପୂରିତ ।

ଦିନେ ଦେବର୍ଷି ନାରଦ ସୃଷ୍ଟିକର୍ତ୍ତାଙ୍କ ଆଦେଶରେ ବାଲ୍ମୀକଙ୍କ ଆଶ୍ରମରେ ଯାଇ ଉପନୀତ ହେଲେ । ତାଙ୍କୁ ଦେଖିବା ମାତ୍ରକେ ବାଲ୍ମୀକି ଓ ଭରଦ୍ୱାଜ ସସମ୍ଭ୍ରମ ଉଠି ପ୍ରଣାମ କଲେ, ତାଙ୍କୁ କୁଶାସନରେ ବସାଇ ଯଥୋଚିତ ଆଦର ଅଭ୍ୟର୍ଥନା କଲେ । ବାଲ୍ମୀକି କୃତାଞ୍ଜଳିପୁଟରେ ନାରଦଙ୍କୁ କହିଲେ — 'ଆପଣମାନଙ୍କ ପ୍ରସାଦରେ ରତ୍ନାକର ଆଜି ବାଲ୍ମୀକିରେ ପରିଣତ । ଆପଣଙ୍କ ଚରଣ ସ୍ପର୍ଶରେ ଏ ଆଶ୍ରମ ଆଜି ପବିତ୍ର ହୋଇଅଛି । ବର୍ତ୍ତମାନ ଗୋଟିଏ ପ୍ରାର୍ଥନା । ରାମାୟଣ ରଚନା କରିବା ପାଇଁ ଆପଣଙ୍କର ପିତୃଦେବ ମୋତେ ଆଦେଶ କରିଛନ୍ତି । ମୋତେ ଦୟା କରି ରାମାୟଣ ଚରିତ କହନ୍ତୁ ।'

ମହର୍ଷି ନାରଦ ପୁଣ୍ୟାତ୍ମା ବାଲ୍ମୀକିଙ୍କ ଆଗରେ ପ୍ରସନ୍ନ ବଦନରେ ଶ୍ରୀରାମ ଓ ସୀତାଙ୍କ ଜନ୍ମଠାରୁ ସୀତାଙ୍କର ପାତାଳପ୍ରବେଶ ଓ ରାମଙ୍କ ଦେହତ୍ୟାଗ ପର୍ଯ୍ୟନ୍ତ ରାମାୟଣର ସମସ୍ତ ଘଟନା ପୁଙ୍ଖାନୁପୁଙ୍ଖରୂପେ ବର୍ଣ୍ଣନ କଲେ । ପରେ ବାଲ୍ମୀକି ଓ ଭରଦ୍ୱାଜଙ୍କ ଦ୍ୱାରା ଯଥାବିଧି ପୂଜିତ ହୋଇ ସେ ଦେବଲୋକକୁ ଚାଲିଗଲେ ।

ନାରଦଙ୍କ ପ୍ରସ୍ଥାନର କେତେକ ସମୟ ପରେ, ବାଲ୍ମୀକି ସ୍ନାନ କରିବା ନିମନ୍ତେ ଶିଷ୍ୟଙ୍କ ସହିତ ରମ୍ୟ ତୀର୍ଥ ସ୍ୱଚ୍ଛସଲିଳବିଶିଷ୍ଟ ତମସା-ଧାରରେ ଉପନୀତ ହେଲେ । ଅବଗାହନ ପରେ ବଲ୍କଲ ପରିଧାନ କରି ତମସାତୀରସ୍ଥ ଗୋଟିଏ ବୃକ୍ଷର ପାଦ ଦେଶରେ ବସି ରାମ ନାମ ଜପ କରିବାକୁ ଲାଗିଲେ ।

ସେତେବେଳେ ସେହି ବୃକ୍ଷଶାଖାରେ ଦୁଇଗୋଟି ପକ୍ଷୀ—କ୍ରୌଞ୍ଚ ଓ କ୍ରୌଞ୍ଚୀ—ବସି ରତିସୁଖ ଅନୁଭବ କରୁଥିଲେ । ଠିକ୍ ସେହି ସମୟରେ ଜଣେ ବ୍ୟାଧ କ୍ରୌଞ୍ଚଟିକୁ ଶରବିଦ୍ଧ କରି ପକାଇଲା । ବାଣା-ହତ ପକ୍ଷିଟି ରକ୍ତାକ୍ତ ଦେହରେ ବୃକ୍ଷଶାଖାରୁ ଖସି ବାଲ୍ମୀକିଙ୍କ ଆଗରେ ପଡ଼ିଗଲା—କିଛି ସମୟ ଛଟପଟ ହୋଇ ପ୍ରାଣ ହରାଇଲା । ସୁରତାସକ୍ତ ପତିର ଆକସ୍ମିକ ମରଣରେ କାତର ହୋଇ, ସଙ୍ଗହୀନା କ୍ରୌଞ୍ଚୀଟି କରୁଣ କଣ୍ଠରେ ବିଲାପ କରି ଉଡ଼ିଲା । ରୁଧିରାକ୍ତ ପକ୍ଷିକୁ ଦେଖିବାକ୍ଷଣି ମୁନି ଚମକି ପଡ଼ିଲେ, କାନରେ ହାତ ଦେଇ ଉଚ୍ଚାରଣ କଲେ ସେଇ ରାମ ନାମ । ପ୍ରାଣଶୂନ୍ୟ ପକ୍ଷିକୁ ତଳୁ ଉଠାଇ କୋଳରେ ଧରି ତା ଦେହରେ ହାତ ବୁଲାଇବାକୁ ଲାଗିଲେ । କ୍ରୌଞ୍ଚର ନିଦାରୁଣ ମରଣ ଦେଖି, କ୍ରୌଞ୍ଚୀର ବିକଳ ରୋଦନ ଶୁଣି ପୁଣ୍ୟାତ୍ମା ବାଲ୍ମୀକିଙ୍କ ହୃଦୟରେ ଯୁଗପତ୍ କରୁଣାର ଆବିର୍ଭାବ ହେଲା, ଦାରୁଣ ଦୁଃଖ ଜାତ ହେଲା ।

ସେ ମୁହୂର୍ତ୍ତରେ ତାଙ୍କ ମୁଖରୁ ଗୋଟିଏ ଚମତ୍କାର ସଂସ୍କୃତ ଶ୍ଳୋକ ହଠାତ୍ ବାହାରି ପଡ଼ିଲା—

"ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀଃ ସମାଃ ।
ଯତ୍ କ୍ରୌଞ୍ଚ ମିଥୁନାଦେକମବଧୀଃ କାମମୋହିତମ୍ ।।"

'ରେ ନିଷାଦ ! ତୁ କାମମତ୍ତ କ୍ରୌଞ୍ଚକୁ ବଧ କଲୁ । ଏଣୁ ତୁ ଆଉ ପ୍ରତିଷ୍ଠା ପାଇବୁ ନାହିଁ । ମୋ ଆଗରେ ଜୀବହତ୍ୟା କରୁଛୁ,ନିର୍ଦ୍ଦୋଷ ପକ୍ଷୀ ପ୍ରତି ଅକାରଣ ହିଂସା କରୁଛୁ । ତୁ ମହା ପାପୀ, ନରକରେ ସ୍ଥାନ ପାଇବୁ, ଚିର ଦିନ ଦୁଃଖ କଷ୍ଟ ଭୋଗ କରିବୁ ।'

କି ପରିବର୍ତ୍ତନ ! ଯେଉଁ ଚକ୍ଷୁରୁ ପାପ, ଅତ୍ୟାଚାର, ପ୍ରତିହିଂସାର ପ୍ରଚଣ୍ଡ ଅଗ୍ନି ସ୍ଫୁଲିଙ୍ଗ ଅନବରତ ନିର୍ଗତ ହେଉଥିଲା, ସେଇ ଚକ୍ଷୁ ଆଜି କରୁଣରସରେ ଢଳ ଢଳ, ପ୍ରେମରେ ଛଳଛଳ । ଯେଉଁ ହୃଦୟ ନରହତ୍ୟା, ରକ୍ତପାତ, ଲୁଣ୍ଠନ, ଧ୍ୱଂସ ପାଇଁ ସତତ ଲାଳାୟିତ, ପ୍ରସ୍ତୁତ ଥିଲା, ସେହି ହୃଦୟ ବର୍ତ୍ତମାନ ପକ୍ଷିମରଣରେ, ଜୀବରୁଧିର-ପାତରେ ତୀବ୍ରବେଦନାପ୍ରାପ୍ତ । ହିଂସା କ୍ରୋଧ ଯାହାଙ୍କର ଆମୋଦ ପ୍ରମୋଦ ଥିଲା, ସେ ବର୍ତ୍ତମାନ ଦୟା ଓ କ୍ଷମାର ଅବତାର । ରତ୍ନାକରଙ୍କ କର-ପଦ୍ମରେ ପ୍ରତିମୁହୂର୍ତ୍ତ ଖଡ୍ଗ, ମୁଦ୍ଗର, ଧନୁଶର ଇତ୍ୟାଦି ଅସ୍ତ୍ର ଶସ୍ତ୍ର ଆଶ୍ରୟ ନେଉଥିଲା । ବାଲ୍ମୀକିଙ୍କର କରପଦ୍ମ ଆଜି ନିଷାଦ-ନିହତ କ୍ରୌଞ୍ଚ ଦେହରେ ସମବେଦନାର ପ୍ରମାଣ ସ୍ୱରୂପ ଶୃଙ୍ଖଳିତ । ଅଶାନ୍ତି, ଅନ୍ୟାୟ ଥିଲା ରତ୍ନାକରଙ୍କର ଦୈନନ୍ଦିନ ବିଳାସ—ଶାନ୍ତି, ନ୍ୟାୟ ଏବେ ବାଲ୍ମୀକିଙ୍କର ନିତ୍ୟ ସହଚର । ରତ୍ନାକର ବୁଡ଼ିଥିଲେ ଯାଇ ରସାତଳରେ—ବାଲ୍ମୀକି ଆଜି ବ୍ୟୋମସ୍ପର୍ଶୀ ହିମାଳୟର ଉତ୍ତୁଙ୍ଗ ଶୃଙ୍ଗରେ ।

ମହର୍ଷି ବାଲ୍ମୀକିଙ୍କ ମୁଖରୁ ଯେଉଁ ଶ୍ଳୋକ ନିଃସୃତ ହେଲା, ତାହା ଅନୁଷ୍ଟୁପ୍ ଛନ୍ଦରେ ରଚିତ । କବିତାରଚନା କେବେ ସେ କରି ନ ଥିଲେ—ଶ୍ଳୋକରଚନାର କଳ୍ପନା ବି କରି ନ ଥିଲେ । ଅଜି କିନ୍ତୁ ଏ କବିତା, ତାଙ୍କର ଏ ପ୍ରଥମ କବିତା, ଭାରତୀୟ ସାହିତ୍ୟର ଆଦ୍ୟ କବିତା, ତାଙ୍କ ହୃଦୟର ନିଭୃତ ପ୍ରଦେଶରୁ ସ୍ୱତଃ ଉଚ୍ଛ୍ୱସିତ ହୋଇ ଉଠିଲା – ତାଙ୍କର ଅଜ୍ଞାତସାରରେ,ବିନା ଚନ୍ତାରେ, ବିନା ପ୍ରୟାସରେ । ପ୍ରାଣର ଉଚ୍ଛ୍ୱାସ ସଂଯତ, ଦମିତ ହେବାର ନୁହେ—ହୋଇ ପାରିଲା ନାହିଁ । ବାଲ୍ମୀକିଙ୍କର ଏ ଅଯତ୍ନରଚିତ କବିତା ସଂସ୍କୃତସାହିତ୍ୟ-ଜଗତରେ ଯୁଗାନ୍ତର ଆନୟନ କଲା—ଭାରତର ତଥା ଜଗତର ପ୍ରଥମ ସଂସ୍କୃତ ଛନ୍ଦୋବଦ୍ଧ କବିତା ହୋଇ ଉଠିଲା ।

ମୁଖରୁ ଶ୍ଳୋକଟି ନିର୍ଗତ ହେବାକ୍ଷଣି ବାଲ୍ମୀକି ବିସ୍ମିତ ହୋଇ ଭାବିଲେ—'ପକ୍ଷିଶୋକ୍‌ରେ କାତର ହୋଇ ମୁଁ ଏ କଣ କହି ପକାଇଲି !' ସେ ଉଠି ତମସା ଜଳରେ କ୍ରୌଞ୍ଚର ମୃତ କଳେବରଟି ଭସାଇ ଦେଇ ପୁନର୍ବାର ସ୍ନାନ କଲେ । ପରେ ଭରଦ୍ୱାଜଙ୍କ ସଙ୍ଗେ ନିଜ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ ।

ବାଲ୍ମୀକି ଯେଉଁ ଶ୍ଳୋକରେ ଶବରକୁ ଅଭିଶାପ ଦେଲେ ତାହା ଶୁଣିବାକ୍ଷଣି ଭରଦ୍ୱାଜଙ୍କ ମନରେ ଅଙ୍କିତ ହୋଇଗଲା । ଶ୍ଳୋକଟି ଗୁରୁଶିଷ୍ୟ ଉଭୟଙ୍କର ମୁଖସ୍ଥ । ଆଶ୍ରମରେ ପହଞ୍ଚିବା ମାତ୍ରକେ ଭରଦ୍ୱାଜ କବିତାଟି ଖଣ୍ଡିଏ ତାଳ ପତ୍ରରେ ଲେଖି ରଖିଲେ । ରତ୍ନାକର ଋଷି-କୁମାର ହୋଇବାବେଳେ ସକଳ ଶାସ୍ତ୍ରରେ ଗଭୀର ପାଣ୍ଡିତ୍ୟ ଅର୍ଜ୍ଜନ କରି ଥିଲେ । କିନ୍ତୁ ଅଭ୍ୟୁଳ୍ପିତ ପାପ, ଅତ୍ୟାଗ୍ରହ ପ୍ରଭାବରେ ତାଙ୍କର ଜ୍ଞାନ ଲୁପ୍ତ ହୋଇ ପଡ଼ିଥିଲା । ଅତଏବ ବାଲ୍ମୀକି ତାଙ୍କର ଆକସ୍ମିକ କବିତା-

୭

କାଳକ୍ରମେ ଅନେକ ଋଷିପୁତ୍ର ବାଲ୍ମୀକି ମୁନିଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଗୁରୁ ପାଖରେ ପାଳିତ ହେଲେ । ମୁନି ପ୍ରତ୍ୟହ ଶିଷ୍ୟମାନଙ୍କୁ ରାମାୟଣ ପଢି ଶୁଣାନ୍ତି । ସେ ଯୋଗସ୍ଥିତ ହୋଇ ନିଜର ଅତୀତ ଓ ଭାବୀ ଜୀବନ ବୃତ୍ତାନ୍ତ, ହସ୍ତସ୍ଥିତ ଆମଳକ ପରି, ଦେଖି ପାରୁଥିଲେ । ଶିଷ୍ୟମାନଙ୍କୁ କେବେ କେବେ ଅମୃତଚରିତ ବି ଶୁଣାନ୍ତି । ଦିନ ଏପରି ସରିବାକୁ ଲାଗିଲା । ବାଲ୍ମୀକି ଇଷ୍ଟଦେବତା ଶ୍ରୀରାମଚନ୍ଦ୍ରଙ୍କୁ ସ୍ୱଚକ୍ଷୁରେ ଦର୍ଶନ କରିବା ସକାଶେ ଅଧୀର, ଉଦ୍‌ଗ୍ରୀବ ହୋଇ ରହିଲେ ।

ବାଲ୍ମୀକି ଦଶରଥଙ୍କର ସମସାମୟିକ । ସେ ପ୍ରତ୍ୟହ ଯୋଗ ବଳରେ ଅଥବା ଶିଷ୍ୟଗଣଙ୍କ ସାହାଯ୍ୟରେ ଅଯୋଧ୍ୟା, ମିଥିଳା, ଲଙ୍କା ଇତ୍ୟାଦି ରାଜ୍ୟର ସମସ୍ତ ଖବର ରଖୁଥିଲେ, ଗୁପ୍ତ ବିଷୟ ସବୁ ବୁଝି ପାରୁଥିଲେ । ମୁନି ଋଷିଙ୍କର ଅସାଧ୍ୟ ବା କଣ ? ନିଜ କାବ୍ୟବର୍ଣ୍ଣିତ ପ୍ରତ୍ୟେକ ଘଟନା ବର୍ଣ୍ଣିତ ସ୍ଥାନମାନଙ୍କରେ ପ୍ରତ୍ୟହ ବାସ୍ତବିକ ସଂଘଟିତ ହେବାର ଦେଖି, ଜାଣି ବା ଶୁଣି ବାଲ୍ମୀକି ଗଭୀର ଆନନ୍ଦାନୁଭବ କରିବାକୁ ଲାଗିଲେ । ରାମାୟଣଚରିତ-ବର୍ଣ୍ଣନା ଏହି ପୁସ୍ତକର ଉଦ୍ଦେଶ୍ୟ ନୁହେ । ତେବେ ବାଲ୍ମୀକି ଜୀବନ ସହିତ ରାମାୟଣ-ବିବୃତ ଯେଉଁ ଯେଉଁ ଘଟନାର ସଂପର୍କ ଅଛି, ତାହାର ସ୍ଥୂଳ ପରିଚୟହିଁ ପାଠକପାଠିକା-ମାନେ ପାଇବେ ।

ଶ୍ରୀରାମ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜନ୍ମଗ୍ରହଣ କଲେ । ସେମାନେ କ୍ରମଶଃ ବୟଃସ୍ଥ ହୋଇ ବିବାହ କଲେ । ବୃଦ୍ଧ ରାଜା ଦଶରଥ ଶ୍ରୀରାମଙ୍କୁ ସିଂହାସନ ଦେବାର ଆୟୋଜନ କରିବାରୁ ସେଥିରେ ବିଘ୍ନ ଘଟିଲା । ଭରତଙ୍କ ଜନନୀ କୈକେୟୀ ରାମଙ୍କୁ ଚଉଦବର୍ଷ ବନକୁ



ରତ୍ନାକର ବାଲ୍ମୀକି ହେଲେ

ପଠାଇ ଭରତଙ୍କୁ ସିଂହାସନରେ ବସାଇବା ପାଇଁ ହଠ ବସିଲେ । ସତ୍ୟପ୍ରତିଜ୍ଞ ରାମଚନ୍ଦ୍ର ପିତୃସତ୍ୟପାଳନାର୍ଥ ଲକ୍ଷ୍ମଣ ଓ ସୀତାଙ୍କୁ ସଙ୍ଗେ ନେଇ ବନବାସୀ ହେଲେ ।

ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ଅରଣ୍ୟରେ ନାନା ସ୍ଥାନ ଭ୍ରମଣ କରି ଦିନେ ଚିତ୍ରକୂଟ ପର୍ବତ ନିକଟସ୍ଥ ବାଲ୍ମୀକଙ୍କ ଆଶ୍ରମରେ ଯାଇ ଉପସ୍ଥିତ ହେଲେ । ଦେଖିଲେ, ତପୋବନରେ ନାନା ଜାତିର ପଶୁ ପକ୍ଷୀ ବିହାର କରୁଅଛନ୍ତି, ବୃକ୍ଷସମୂହ ତର ପୁଷ୍ପିତ ଓ ଫଳିତ ହୋଇଅଛି, ମୁନିଶ୍ରେଷ୍ଠ ବାଲ୍ମୀକି କୁଶାସନରେ ଆସୀନ ହୋଇଛନ୍ତି । ତିନିହେଁ ମୁନିଙ୍କର ପଦ-ବନ୍ଦନା କଲେ । ବହୁ ଦିନ ପରେ ଜଟାମୁକୁଟମଣ୍ଡିତ ଇଷ୍ଟଦେବତାଙ୍କୁ ଦେଖି ଋଷି ପରମ ଆହ୍ଲାଦରେ ଆତ୍ମବିସ୍ମୃତ ହୋଇଗଲେ । ତାଙ୍କର ନୟନଯୁଗଳରୁ ଆନନ୍ଦ-ଧାରା ଝରଝର ବହିବାକୁ ଲାଗିଲା । ତିନି ଜଣଙ୍କୁ ଦେଖିବା ମାତ୍ରକେ ବାଲ୍ମୀକି ଗାତ୍ରୋତ୍ଥାନ କଲେ ଏବଂ ଜଗତପୂଜ୍ୟ ରାମଚନ୍ଦ୍ରଙ୍କର ରୂପରାଶି ଅନିମେଷ ଚକ୍ଷୁରେ ସନ୍ଦର୍ଶନ କରି, ଆନନ୍ଦାଶ୍ରୁ ବର୍ଷଣ କରି ତାହାଙ୍କୁ ଆଲିଙ୍ଗନ କରି ପକାଇଲେ । ପରେ ତିନି ଜଣଙ୍କୁ ପରମ ଆଦରରେ ବସାଇ ପାଦ୍ୟ ଅର୍ଘ୍ୟ ଦ୍ୱାରା ପୂଜା କଲେ, ସୁମିଷ୍ଟ କନ୍ଦମୂଳଫଳାଦି ଆଣାଇ ସେମାନଙ୍କୁ ଖାଇବାକୁ ଦେଲେ ।

ବାଲ୍ମୀକି ବଦ୍ଧାଞ୍ଜଳିରେ ଠିଆ ହୋଇ ଶ୍ରୀରାମଙ୍କୁ ଭକ୍ତିଗଦ୍‌ଗଦ କଣ୍ଠରେ କହିଲେ—'ହେ ରଘୁନନ୍ଦନ ! ତୁମ ନାମର ମହିମା କପରି ବର୍ଣ୍ଣନ କରିବି, ବୁଝି ପାରୁ ନାହିଁ । ତୁମର ପବିତ୍ର ନାମ ପ୍ରଭାବରେହିଁ ମୁଁ ବ୍ରହ୍ମର୍ଷିତ୍ୱ ଲାଭ କରିଅଛି । ତୁମ ନାମଗୁଣରେ ମୁଁ ନୂତନ ଜନ୍ମ, ନବ ଜୀବନ ପାଇଅଛି । ତୁମକୁ ଦେଖିବା ପାଇଁ ବ୍ୟାକୁଳ, ଉତ୍କଣ୍ଠିତ ହୋଇ ଦିନ କଟାଉଥିଲି । ଏତେ ଦିନର ଅଧୀରତା, ଉତ୍କଣ୍ଠା ପରେ

ଆଜ ତୁମ ଦର୍ଶନରେ ମୋ ଜୀବନ କୃତାର୍ଥ, ଜନ୍ମ ସାର୍ଥକ ହୋଇଅଛି । ତୁମର ଅସୀମ କୃପାରେ ଆଜ ତୁମମାନଙ୍କୁ ମୁଁ ଆଶ୍ରମର ଅତିଥିରୂପେ ଦେଖିବାକୁ ସମର୍ଥ ହୋଇଅଛି । ମୋ ପ୍ରାଣ ତୁମକୁ ଆଉ କଣ କହିବ ରାମ ?'

ବାଲ୍ମୀକିଙ୍କର ଅପୂର୍ବ ଶ୍ରଦ୍ଧା, ଭକ୍ତି ଓ ପ୍ରେମରେ ତିନି ଅତିଥି ମୁଗ୍ଧ, ଚକିତ ହୋଇଗଲେ । ସେମାନଙ୍କର ମନେ ହେଲା, ସେମାନେ ଯେପରି ଏପରି ସରଳ ଯତ୍ନ ଆଦର, ଅକପଟ ପ୍ରେମ ଅନ୍ୟ କାହା ନିକଟରୁ ପାଇ ନାହାନ୍ତି, ସେମାନଙ୍କ ପ୍ରତି ଏପରି ଅଟଳ ଐକାନ୍ତିକ ଶ୍ରଦ୍ଧା ଭକ୍ତି ଅନ୍ୟ କେହି ଦେଖାଇ ନାହିଁ ।

କିଛି କ୍ଷଣ ବିଶ୍ରାମ କରିବା ପରେ, ରାମଚନ୍ଦ୍ର ଅଞ୍ଜଳିବଦ୍ଧପୂର୍ବକ ବାଲ୍ମୀକିଙ୍କୁ ବିନୟବାକ୍ୟରେ ଜଣାଇଲେ—'ମୁନିଶ୍ରେଷ୍ଠ ! ମୁଁ ପିତାଙ୍କର ଆଦେଶ ଓ ସତ୍ୟ ପାଳନ କରିବା ସକାଶେ ବନକୁ ଆସିଛି, ଚଉଦ ବର୍ଷ କାଳ ଆମେମାନେ ବନବାସ କରିବୁଁ । ଆପଣ ଦୟା କରି ଏପରି ଗୋଟିଏ ସ୍ଥାନ ଦେଖାଇ ଦିଅନ୍ତୁ ଯେଉଁଠାରେ ଆମେମାନେ ସୁଖରେ ନିଶ୍ଚିନ୍ତ ମନରେ କିଛି ଦିନ ବାସ କରିପାରିବୁଁ ।'

ଋଷି ଅଳ୍ପ ହସି କହିଲେ —'ହେ ପୁଣ୍ୟଦର୍ଶନ ! ତୁମେ ତ ସର୍ବ-ଲୋକ ନିବାସର ଉତ୍ତମ ସ୍ଥାନ, ସର୍ବଭୂତରେ ତୁମେହିଁ ବାସ କର । ଯେଉଁମାନେ ଶାନ୍ତସ୍ୱଭାବ ଓ ସମଦୃଷ୍ଟି ହୋଇ ପ୍ରତି ମୁହୂର୍ତ୍ତ ତୁମର ଭଜନା କରନ୍ତି, ସେମାନଙ୍କର ହୃଦୟ ତୁମର ମନ୍ଦିର । ଯେଉଁମାନେ ନିରହଙ୍କାର ରାଗଦ୍ୱେଷରହିତ ସେମାନଙ୍କର ହୃଦୟହିଁ ତୁମର ନିତ୍ୟ-ଲୀଳାନିକେତନ । ଯେ ତୁମର ଶରଣାଗତ ହୋଇ ତୁମର ନାମ ଜପ କରେ, ସର୍ବଦା ସନ୍ତୁଷ୍ଟ ରହି ତୁମକୁ ମନୋବୃତ୍ତି, ସକଳ କର୍ମ୍ମ ସମର୍ପଣ

କରେ, ତାହାର ହୃଦୟ ତୁମର କ୍ରୀଡ଼ାସ୍ଥଳୀ । ଯେ ଅପ୍ରିୟ ବସ୍ତୁ ପାଇଲେହେଁ ଦୁଃଖିତ ହୁଏ ନାହିଁ, ପ୍ରିୟ ପଦାର୍ଥ ପ୍ରାପ୍ତ ହୋଇ ମଧ ହର୍ଷ-ଗର୍ବିତ ହୁଏ ନାହିଁ କିନ୍ତୁ ତୁମକୁ ସର୍ବମୟ ଜାଣି ତୁମର ଧ୍ୟାନ, ଭଜନା କରେ, ତାହାର ହୃଦୟ ତୁମର ବସତି । ଯେ ଷଡ଼ରିପୁ-ଜୟ କରି ସକଳ ଆତ୍ମାରେ ତୁମକୁହିଁ ଦର୍ଶନ କରେ, ତାହାର ସଂସାର-ଧର୍ମ-ନିର୍ମୁକ୍ତ ହୃତ୍‌ପଦ୍ମହିଁ ତୁମର ବାସସ୍ଥାନ । ଯେଉଁମାନେ ନିରନ୍ତର ଅଭ୍ୟାସ ଦ୍ୱାରା ତୁମଠାରେ ଚିତ୍ତ ସ୍ଥିର କରିଅଛନ୍ତି, ତୁମର ପଦ-ସେବାରେ ଯେଉଁମାନଙ୍କର ନିଷ୍ଠା ଜନ୍ମିଅଛି, ତୁମର ନାମ ଧ୍ୟାନ ସ୍ମରଣ, ନାମଗାନ କରି କରି ଯେଉଁମାନଙ୍କର ପାପ କ୍ଷୟ ହୋଇଅଛି, ସେମାନଙ୍କ ହୃଦୟରେ ତୁମେ ସୀତା ସହିତ ସର୍ବଦା ବାସ କର । ତେବେ ତୁମେ ଯଦି ଏଠାରେ ବାସସ୍ଥାନ ଚାହଁ, ତାହାହେଲେ ବାସ କର ଏ ହୃଦୟ ମନ୍ଦିରରେ ।'

ବାଲ୍ମୀକିଙ୍କର ଏହି ଭାବ ଦେଖି ଶ୍ରୀରାମଚନ୍ଦ୍ର କିଞ୍ଚିତ୍ ଲଜ୍ଜିତ ହେଲେ । ମଧୁର କଥାରେ ଋଷିଙ୍କୁ ଭୁଲାଇ ଅସ୍ଥାୟୀ ଅବସ୍ଥାନ ପାଇଁ ଗୋଟିଏ ସ୍ଥାନ ସ୍ଥିର କରିବାକୁ ଅନୁରୋଧ କଲେ । ବାଲ୍ମୀକି ରାମ, ଲକ୍ଷ୍ମଣ, ସୀତା ଓ ଶିଷ୍ୟଗଣଙ୍କ ସହିତ ଚିତ୍ରକୂଟ ଓ ଗଙ୍ଗା ମଧ୍ୟବର୍ତ୍ତୀ ପ୍ରଦେଶକୁ ଗଲେ । ସେଠାରେ ପୂର୍ବ ପଶ୍ଚିମମୁଖରେ ଦୁଇ ଗୋଟି ସୁବିସ୍ତୀର୍ଣ୍ଣ ପର୍ଣ୍ଣଶାଳା ତିଆରି କରାଇଲେ । ପର୍ଣ୍ଣଶାଳାର ଉତ୍ତର ଭାଗରେ ପର୍ବତ, ଦକ୍ଷିଣରେ ମନ୍ଦାକିନୀ । ମୁନି ରାମଙ୍କୁ ନିଜ ଜୀବନର ସକଳ ବୃତ୍ତାନ୍ତ ଶୁଣାଇ ଶିଷ୍ୟମାନଙ୍କ ସହ ଆଶ୍ରମକୁ ଫେରିଲେ । ରାମ, ଲକ୍ଷ୍ମଣ ଓ ସୀତା ସେହି ଦୁଇ ପର୍ଣ୍ଣକୁଟୀରରେ ସୁଖରେ ବାସ କରିବାକୁ ଲାଗିଲେ । ବାଲ୍ମୀକି କେବେ କେବେ ସେଠାକୁ ଯାଇ ଶ୍ରୀରାମଦର୍ଶନ କରନ୍ତି ।



୭

ଶ୍ରୀରାମଚନ୍ଦ୍ର ରାବଣବଧ କରି ଅଯୋଧ୍ୟାକୁ ଫେରି ରାଜା ହେଲେ, ସୀତା ହେଲେ ରାଣୀ । କିନ୍ତୁ ସୀତାଙ୍କର ଏ ସୁଖରେ ବିଧାତାଙ୍କର ବାମ ଘଟିଲା । ରାମଚନ୍ଦ୍ର ଅମୂଳକ ଲୋକାପବାଦରେ ଆସ୍ଥା ସ୍ଥାପନ କରି ମିଥ୍ୟା କଳଙ୍କ ଉପରେ ନିତାନ୍ତ ନିରପରାଧିନୀ ସୀତାଙ୍କୁ ବନକୁ ପ୍ରେରଣ କଲେ । ତାଙ୍କ ଆଦେଶରେ ଲକ୍ଷ୍ମଣ ସୀତାଙ୍କୁ ନେଇ ବାଲ୍ମୀକିଙ୍କ ତପୋବନ ନିକଟରେ ଛାଡ଼ି ଆସିଲେ । ସେତେବେଳେ ସୀତା ଦୋହଦବତୀ ।

ସୀତାଙ୍କର ଶୋଚନୀୟ ଦଶା ଦେଖି ବାଲ୍ମୀକିଙ୍କ ମନରେ ଦାରୁଣ ବିଷାଦ ଜାତ ହେଲା । ସେ ପରମ ଯତ୍ନରେ ଦୁଃଖିନୀ ଜାନକୀଙ୍କୁ ନିଜ ଆଶ୍ରମକୁ ନେଇ ନିଜ କନ୍ୟାପରି ଅତି ସ୍ନେହ ଓ ଆଦରରେ ରଖିଲେ । ସୀତାଙ୍କର ମନୋବେଦନା ଅପନୋଦନ କରିବା ପାଇଁ ସେ ବରାବର ଚେଷ୍ଟା କରିବାକୁ ଲାଗିଲେ । କ୍ରମେ ମୁନିଙ୍କର ନାନା ଆଶ୍ୱାସନାପୂର୍ଣ୍ଣ ମଧୁର ଉପଦେଶରେ ସୀତା ଆଶ୍ୱସ୍ତ ହୋଇ ଦିନ କଟାଇବାକୁ ଲାଗିଲେ ।

ବାଲ୍ମୀକିଙ୍କ ଆଶ୍ରମରେ ସୀତା ଦୁଇ ଗୋଟି ଯମଜ ପୁତ୍ର ପ୍ରସବ କଲେ । ସେତେବେଳେ ଶତ୍ରୁଘ୍ନ ଥିଲେ ମୁନିଙ୍କ ତପୋବନରେ । ଶ୍ରୀରାମ ବିପୁଳ ସୈନ୍ୟ ସାମନ୍ତ ସଙ୍ଗେ ଦେଇ ଶତ୍ରୁଘ୍ନଙ୍କୁ ପଠାଇଥିଲେ ଲବଣାସୁର ବଧ ପାଇଁ । ଶତ୍ରୁଘ୍ନ ସସୈନ୍ୟ ଯାତ୍ରା କରିବାବେଳ ମାର୍ଗମଧ୍ୟରେ ବାଲ୍ମୀକି ମୁନିଙ୍କ ତପୋବନରେ ଏକ ରାତ୍ରି ଅବସ୍ଥାନ କଲେ । ସେ ରାତ୍ରି ବାଲ୍ମୀକି ଓ ଶତ୍ରୁଘ୍ନ ବସି କଥାବାର୍ତ୍ତା କରୁଛନ୍ତି, ଏପରି ସମୟରେ ଜଣେ ଶିଷ୍ୟ ଧୀର ସ୍ଥିର ଭାବରେ ଆସି ବାଲ୍ମୀକିଙ୍କ କର୍ଣ୍ଣରେ ଅନୁଚ୍ଚ ସ୍ୱରରେ କହିଲା ଯେ, ଜାନକୀ ଦୁଇଟି ଯମଜ ପୁତ୍ର ପ୍ରସବ କରିଛନ୍ତି । ଶତ୍ରୁଘ୍ନ ଯେପରି ଏ ସମ୍ବାଦ ଜାଣି ନ ପାରନ୍ତି, ମୁନି ତହିଁର ବ୍ୟବସ୍ଥା

କଲେ । ପରଦିନ ଶତ୍ରୁଘ୍ନ ସସେନା ତପୋବନ ତ୍ୟାଗ କରିବାରୁ, ମୁନି ନବଜାତ ଶିଶୁ ଦୁହିଁଙ୍କର ଜାତକର୍ମ କରି ସେମାନଙ୍କର ନାମ ରଖିଲେ 'ଲବ' ଓ 'କୁଶ' । ତାଙ୍କର ଅସୀମ ପ୍ରେମ, ଆଦର, ଯତ୍ନରେ ଲବ କୁଶ ଏପରି ବଢ଼ିବାକୁ ଲାଗିଲେ ଯେ, ସେମାନେ ନିଜେ ରାଜକୁମାର ବୋଲି ଆଦୌ ଜାଣିପାରିଲେ ନାହିଁ । ମୁନି ଅଶେଷ ଯତ୍ନ ଓ ପରିଶ୍ରମରେ ଲବକୁଶଙ୍କୁ ଶିକ୍ଷା ଦେଇ ସକଳ ବିଦ୍ୟାରେ ପରମ ପଣ୍ଡିତ କରି ତୋଳାଇଲେ । ଦୁଇ ଭାଇ ଅସ୍ତ୍ର ବିଦ୍ୟାରେ ଧୁରନ୍ଧର ହୋଇ ଉଠିଲେ । ଏହା ଛଡ଼ା, ବାଲ୍ମୀକି ଲବ କୁଶଙ୍କୁ ମନପ୍ରାଣ ଢ଼ାଳି ରାମାୟଣ-ଗାନ ଶିକ୍ଷା ଦେଲେ ।

ଲବ କୁଶ ବୀଣା ବଜାଇ ଦୁହିଁଙ୍କର କଣ୍ଠସ୍ୱର ମିଳାଇ ମଧୁର ସୁନ୍ଦର ରାମାୟଣଗାନ କରନ୍ତି । ସେ ସଙ୍ଗୀତ ଯେ ଶୁଣେ, ସେ ମୁଗ୍ଧ ଚକିତ ହୋଇ ଯାଏ, କିଛିକ୍ଷଣ ନିଷ୍ପନ୍ଦ ଭାବରେ ରହି ଅବିଶ୍ରାନ୍ତ ଅଶ୍ରୁପାତ କରେ—ପଶୁ ପକ୍ଷୀ ପର୍ଯ୍ୟନ୍ତ ମୋହିତ ହୋଇ ଯା'ନ୍ତି । ମୁଗ୍ଧ ଚକିତ ନ ହେବେ ବା କାହିଁକି ? ଶ୍ରୀରାମଚରିତ ଅତି ବିଚିତ୍ର, ପବିତ୍ର । ବାଲ୍ମୀକିଙ୍କର ରଚନା ଅତ୍ୟନ୍ତ ଲଳିତ, ଚମତ୍କାର, ମନୋହର । ସୁକୁମାର ଗାୟକଯୁଗଳଙ୍କର ରୂପମାଧୁରୀ ବିସ୍ତର ହୃଦୟାନନ୍ଦଦାୟକ । ସେମାନଙ୍କର ସ୍ୱରମାଧୁରୀ ନିକଟରେ କିନ୍ନରମାନେ ବି ପରାସ୍ତ, ସେ ସୁମଧୁର ସ୍ୱର ସହିତ ତୁଳନା କଲେ କୋକିଳର କଳରବ କର୍କଶ ବୋଧ ହୁଏ । ବୀଣାଯନ୍ତ୍ରରେ ଦୁଇ ଭାଇଙ୍କର ଅଲୌକିକ ନୈପୁଣ୍ୟ ଜନ୍ମିଥିଲା । ଯେଉଁ ରାମାୟଣ ଗାନରେ ଏ ସମସ୍ତ ବିଷୟର ସମାବେଶ, ତାହା ଶୁଣି କାହାର ପ୍ରାଣ ବା ଅନିର୍ବଚନୀୟ ପ୍ରୀତିରେ ପୂର୍ଣ୍ଣ ନ ହେବ ?

ଶ୍ରୀରାମଙ୍କର ଅଶ୍ୱମେଧ ଯଜ୍ଞକୁ ବାଲ୍ମୀକି ଓ ତାଙ୍କର ଶିଷ୍ୟମାନେ ନିମନ୍ତ୍ରିତ ହେଲେ । ମୁନି ସମସ୍ତ ଶିଷ୍ୟ ଓ ଲବ କୁଶଙ୍କ ସହିତ ଯଜ୍ଞରେ

ଯୋଗ ଦେଲେ । ଯିବାବେଳେ ରାମଙ୍କ ସଭାସ୍ଥଳରେ କିପରି ଆଚରଣ କରିବାକୁ ହେବ, କଣ କହିବାକୁ ହେବ ସେ ସମସ୍ତ ବିଷୟ ବାଲ୍ମୀକି ଲବ କୁଶଙ୍କୁ ତନ୍ନ ତନ୍ନ କରି ବୁଝାଇ ଦେଇଥିଲେ । ଯେଉଁମାନେ ଲବ କୁଶଙ୍କର ରାମାୟଣଗାନ ଆଗରୁ ଶୁଣିଥିଲେ, ସେମାନେ ଶ୍ରୀରାମଙ୍କୁ ସେ କଥା ଜଣାଇଲେ । ରାମଙ୍କ ହୃଦୟରେ ପ୍ରଭୂତ କୌତୂହଳର ସଞ୍ଚାର ହେଲା । ରାମାୟଣ ବାଲ୍ମୀକିଙ୍କ ରଚିତ ବୋଲି ରାମ ପୂର୍ବରୁ ଜାଣିଥିଲେ । ସେ ଯାଗସ୍ଥଳର ସଭାମଣ୍ଡପରେ ରାମାୟଣ ଗାନ କରିବା କାରଣ ଶିଷ୍ୟ ଲବକୁଶଙ୍କୁ ଆଦେଶ କରିବା ପାଇଁ ବାଲ୍ମୀକି ମୁନିଙ୍କୁ ପ୍ରାର୍ଥନା କଲେ ।

ରାମାୟଣର ଯେଉଁ ସମସ୍ତ ଅଂଶରେ ରାମ ଓ ସୀତାଙ୍କର ପରସ୍ପର ପ୍ରେମ ଅନୁରାଗର ବିଷୟ ବର୍ଣ୍ଣିତ ହୋଇଅଛି, ସେ ସମସ୍ତ ଅଂଶ ଗାନ କରିବାକୁ ମୁନି ଲବକୁଶଙ୍କୁ ଆଦେଶ କଲେ । ଦୁହେଁ ବୀଣା ସହ-ଯୋଗରେ ସଙ୍ଗୀତ ଆରମ୍ଭ କଲେ । ସଭାର ଲୋକେ ମୋହିତ ହୋଇ ମୁକ୍ତ କଣ୍ଠରେ ଅଶେଷ ସାଧୁବାଦ ପ୍ରଦାନ କଲେ । ସମସ୍ତେ ନିଶ୍ଚଳ ଭାବରେ ଏକାଗ୍ର ଚିତ୍ତରେ ସଙ୍ଗୀତ ଶ୍ରବଣ ଓ ଅନିମେଷ ନୟନରେ ଦୁଇ ଭାଇଙ୍କର ରୂପ ନିରୀକ୍ଷଣ କରିବାକୁ ଲାଗିଲେ । ଦୁର୍ବହ ସୀତା-ଶୋକରେ ରାମଙ୍କର ପ୍ରାଣ କାନ୍ଦି ଉଠିଲା, ତାଙ୍କ ଚକ୍ଷୁରୁ ପ୍ରବଳ ବେଗରେ ଲୋତକ ବିଗଳିତ ହେବାକୁ ଲାଗିଲା । ରାମ ଲବକୁଶଙ୍କୁ ଯେତିକି ନିରୀକ୍ଷଣ କଲେ ସେତିକି ସେମାନେ ସୀତାଙ୍କର ଯମଜ ପୁତ୍ର, ବୋଲି ତାଙ୍କ ମନରେ ଦୃଢ଼ ପ୍ରତ୍ୟୟ ଜାତ ହେବାକୁ ଲାଗିଲା । ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଲବକୁଶଙ୍କ ଶରୀରରେ ରାମ ଓ ସୀତାଙ୍କ ଅବୟବର ସଂପୂର୍ଣ୍ଣ ଲକ୍ଷଣ, ସୌସାଦୃଶ୍ୟ ଦେଖି ମନେ ମନେ ନାନା ବିତର୍କ କରିବାକୁ ଲାଗିଲେ । ସଭାର ଅନ୍ୟାନ୍ୟ ଲୋକେ ମନେ କଲେ, ଦୁଇ ବାଳକ ଶ୍ରୀରାମଙ୍କର ଠିକ୍, ପ୍ରତିରୂପ—ରାମ ଯେପରି ଦ୍ୱିତୀୟ ମୂର୍ତ୍ତି ପରିଗ୍ରହ କରି କୁମାର ବୟସରେ ଋଷିକୁମାର-ବେଶ ଅବଲମ୍ବନ କରି ଅଛନ୍ତି ।



ବାଲ୍ମୀକି ଆଶ୍ରମରେ ଲବ କୁଶ

ରାମଚନ୍ଦ୍ରଙ୍କର ହୃଦୟ ଚଞ୍ଚଳ ହୋଇ ଉଠିଲା । ଧୈର୍ଯ୍ୟାବଲମ୍ବନ କରିବା ଅସାଧ୍ୟ ମନେ କରି ଲବକୁଶଙ୍କୁ ଗାନ ବନ୍ଦ କରିବାକୁ କହିଲେ । କହିଲେ—'ଭଗବାନ୍ ବାଲ୍ମୀକି ସ୍ୱରଚିତ କାବ୍ୟରେ ଅଦ୍ଭୁତ କବିତ୍ୱ ଶକ୍ତି ଦେଖାଇଛନ୍ତି । କବିଙ୍କର ପାଣ୍ଡିତ୍ୟ ଓ ରଚନାର ଚାତୁର୍ଯ୍ୟରେ, ତୁମମାନଙ୍କର ସୁମଧୁର ସ୍ୱର ଓ ବୀଣାବାଦନରେ ଆମେମାନେ ଚମତ୍କୃତ, ପ୍ରୀତ । ସଙ୍ଗୀତରେ ତୁମେମାନେ କ୍ଳାନ୍ତ ହେଲଣି; ତୁମମାନଙ୍କୁ ଅଧିକ କଷ୍ଟ ଦେବାକୁ ମୋର ଇଚ୍ଛା ହେଉ ନାହିଁ । ବର୍ତ୍ତମାନ ଗାନ ବନ୍ଦ କର ।'

ପରେ ରାମଚନ୍ଦ୍ର ଦୁଇ ବାଳକଙ୍କୁ ଏକ ସହସ୍ର ସୁବର୍ଣ୍ଣ ମୁଦ୍ରା ପୁରସ୍କାର ଦେବା ପାଇଁ ଲକ୍ଷ୍ମଣଙ୍କୁ ଆଦେଶ କଲେ । ଏହା ଶୁଣିବାକ୍ଷଣି ଲବ କୁଶ ବିନୟପୂର୍ଣ୍ଣ ବାକ୍ୟରେ କହିଲେ—'ମହାରାଜ, ଆମେମାନେ ବନବାସୀ, ଋଷିକୁମାର—ବିଳାସୀ ନୋହୁଁ । ଫଳ ମୂଳ ଭକ୍ଷଣ ଓ ବଲ୍କଲ ପରିଧାନ କରୁଁ । ଆମମାନଙ୍କ ସୁବର୍ଣ୍ଣ ମୁଦ୍ରାର ପ୍ରୟୋଜନ ନାହିଁ । ସଙ୍ଗୀତ ଶ୍ରବଣରେ ଆପଣଙ୍କର ଯେଉଁ ଆନନ୍ଦ, ସନ୍ତୋଷ ହୋଇଅଛି ତାହାହିଁ ଆମମାନଙ୍କର ଉପଯୁକ୍ତ ପୁରସ୍କାର—ସେଥିରେ ଆମେମାନେ ଚରିତାର୍ଥ ହୋଇଅଛୁଁ, ଆମର ଯତ୍ନ ଓ ପରିଶ୍ରମ ସଫଳ ହୋଇଅଛି ।' ଦୁଇ ସହୋଦରଙ୍କର ଏପରି ନିଷ୍ପୃହତା ଦେଖି ସମସ୍ତେ ଏକାବେଳକେ ଚମତ୍କୃତ !

ଲବକୁଶଙ୍କୁ ଅବିଚଳିତ ଚକ୍ଷୁରେ ନିରୀକ୍ଷଣ କରିବାରୁ କୌଶଲ୍ୟାଙ୍କ ମନରେ ଦୃଢ଼ ପ୍ରତୀତି ଜନ୍ମିଲା ଯେ, ଦୁହେଁ ସୀତାଙ୍କର ତନୟ । ଏଣୁ ସେ 'ହା ବତ୍ସେ ଜାନକି' କହି ମୂର୍ଚ୍ଛିତା ହୋଇ ପଡ଼ିଲେ । ତାଙ୍କର ଅସ୍ଥିରତା, କାତରତା ଦେଖି ସୁମିତ୍ରା, ଊର୍ମିଳା ପ୍ରଭୃତିଙ୍କର ଅଶ୍ରୁପାତ, ବିଳାପ ଆରମ୍ଭ ହେଲା । ସେମାନଙ୍କ ମନରେ ସଂକ୍ରାମିତ କରିବା ପରେ

କୌଶଲ୍ୟା ଲବକୁଶଙ୍କୁ ନିକଟକୁ ଡକାଇ କୋଳରେ ବସାଇଲେ, ବାରମ୍ବାର ମୁଖଚୁମ୍ବନ କଲେ । ଏ ସମସ୍ତ ଦେଖି ଲବ କୁଶ ଅବାକ୍ ହୋଇ ରହିଲେ । କୌଶଲ୍ୟା କଷ୍ଟରେ ଶୋକ ସମ୍ବରଣ କରି ଲବକୁଶଙ୍କୁ ସେମାନଙ୍କ ଜନକଜନନୀଙ୍କ ନାମ ଜିଜ୍ଞାସା କଲେ । ସେମାନେ ଅତି ବିନୀତ ଭାବରେ ସ୍ୱ ସ୍ୱ ନାମ ପ୍ରକାଶ କଲେ । କହିଲେ,—"ଆମର ପିତା କିଏ ଜାଣି ନାହୁଁ, ତାଙ୍କୁ ଆଜଯାଏଁ କେବେ ଦେଖି ନାହୁଁ । ଆମର ମା ଅଛନ୍ତି—ତପସ୍ୱିନୀ ସେ । ଦିନେ ହେଲେ ଆମେ ତାଙ୍କର ନାମ ଶୁଣି ନାହୁଁ, କେହି ଆମକୁ ତାଙ୍କର ନାମ କହି ନାହାନ୍ତି । ଆମେମାନେ ଜନନୀଙ୍କୁ କିମ୍ବା ଅନ୍ୟ କାହାକୁ ତାଙ୍କର ନାମ ପଚାରି ନାହୁଁ । ଆମେମାନେ ମହର୍ଷି ବାଲ୍ମୀକିଙ୍କର ଶିଷ୍ୟ—ତାଙ୍କର ତପୋବନରେ ପାଳିତ ହୋଇ ତାଙ୍କ ନିକଟରୁ ବିଦ୍ୟା ଶିକ୍ଷା କରୁଛୁଁ ।"

କୌଶଲ୍ୟାଙ୍କର ସନ୍ଦେହ ବହୁ ପରିମାଣରେ ଦୂର ହେଲା । ଅଥଚ ସଂପୂର୍ଣ୍ଣ ରୂପେ ତୃପ୍ତ ନ ହୋଇ ଦୁଇ ଶିଶୁଙ୍କୁ ସେମାନଙ୍କ ଜନନୀଙ୍କର ଆକୃତିବର୍ଣ୍ଣନା କରିବାକୁ କହିଲେ । ଲବ କୁଶ ମାତାଙ୍କର ଆକୃତି ଯଥାଯଥ ବର୍ଣ୍ଣନ କଲେ । ଦୁହେଁ ଯେ ସୀତାଙ୍କର ପୁତ୍ର, ଏ ବିଷୟ ସମସ୍ତେ ଠିକ୍ ବୁଝିପାରିଲେ । ରାଜପରିବାରର ଶୋକ ଉଚ୍ଛୁଳି ଉଠିଲା । ପରେ କୌଶଲ୍ୟା ଦୁଇ ବାଳକଙ୍କୁ ସେମାନଙ୍କର ମାତା କିପରି ଅଛନ୍ତି ପଚାରିଲେ । ଲବ କହିଲେ—"ମା'ଙ୍କୁ ସବୁବେଳେ ଜୀବନ୍ମୃତ ପ୍ରାୟ ଦେଖୁଁ । ଯେପରି ସେ ଦିନୁ ଦିନୁ ଜୀର୍ଣ୍ଣ ଶୀର୍ଣ୍ଣ ହୋଇ ପଡ଼ୁଛନ୍ତି, ସେଥିରୁ ବୋଧ ହୁଏ ସେ ଆଉ ଅଧିକ ଦିନ ସଂସାରରେ ରହିପାରିବେ ନାହିଁ ।" ସମସ୍ତେ ରୋଦନ କରିବାକୁ ଲାଗିଲେ ।

ପରେ ସେ ବାଲ୍ମୀକି ମୁନିଙ୍କୁ ନିକଟକୁ ଡକାଇ କୃତାଞ୍ଜଳିପୁଟରେ ପଚାରିଲେ—"ଭଗବନ୍, ଏ ଦୁଇ ବାଳକ କିଏ କୃପା କରି ବୁଝାଇ

କହନ୍ତି” ମୁନି ଲବକୁଶଙ୍କର ପ୍ରକୃତ ପରିଚୟ ଦେଲେ—ଯେଉଁ ଦିନ ଲକ୍ଷ୍ମଣ ସୀତାଙ୍କୁ ଅରଣ୍ୟରେ ଛାଡ଼ି ଆସିଲେ ସେହି ଦିବସ ଠାରୁ ଘଟିଥିବା ସମସ୍ତ ବୃତ୍ତାନ୍ତ ଆଦ୍ୟନ୍ତ ବର୍ଣ୍ଣନ କଲେ ଏବଂ ରାମ-ବିରହରେ ସୀତାଙ୍କର କିପରି ଅବସ୍ଥା ହୋଇଅଛି ତାହା ବି ଯଥାଯଥ ବର୍ଣ୍ଣନା କଲେ । ଏ ସମସ୍ତ କଥା ଶୁଣି ସମସ୍ତଙ୍କର ବକ୍ଷଃସ୍ଥଳ ଚକ୍ଷୁ-ଜଳରେ ପ୍ଲାବିତ ହୋଇଗଲା ।

ଏତେ ଦିନ ପରେ ଆତ୍ମପରିଚୟ ଲାଭ କରିବାରୁ ଲବ କୁଶଙ୍କର ଅନ୍ତଃକରଣରେ ବିବିଧ ଅନିର୍ବଚନୀୟ ଭାବର ଉଦ୍ରେକ ହେବାକୁ ଲାଗିଲା । ବାଲ୍ମୀକି ସେ ଦୁହିଁଙ୍କୁ ସେମାନଙ୍କ ପିତାଙ୍କର, ପିତୃବ୍ୟ, ପିତାମହୀ ଓ ପିତୃବ୍ୟ-ପତ୍ନୀଗଣଙ୍କର ପ୍ରକୃତ ପରିଚୟ ଦେଲେ । ଦୁଇ ଭାଇ ସେମାନଙ୍କର ଚରଣତଳେ ଅପୂର୍ବ ଭକ୍ତି ସହ ସାଷ୍ଟାଙ୍ଗ ପ୍ରଣିପାତ କଲେ । ସମସ୍ତେ ଆନନ୍ଦ ଓ ଆଶ୍ୱାସନାରେ ଅଧୀର ହୋଇ ଦୁହିଁଙ୍କୁ ଆଲିଙ୍ଗନ, ଚୁମ୍ବନ କଲେ । ରାମଚନ୍ଦ୍ର ଆନନ୍ଦାଶ୍ରୁ ବର୍ଷଣ କରି ଦୁଇ ପୁତ୍ରଙ୍କୁ କୋଳରେ ବସାଇ ସୁଖସ୍ୱପ୍ନ-ଦର୍ଶନରେ ବିଭୋର ହେଲେ ।

ରାମଙ୍କ ହସ୍ତରେ ଲବ କୁଶଙ୍କୁ ସମର୍ପଣ କରିବା ପରେ ବାଲ୍ମୀକି ସୀତାଙ୍କୁ ଅନ୍ତଃପୁରକୁ ଆଣିବା ପାଇଁ ରାମଙ୍କୁ ଅନୁରୋଧ କରି କହିଲେ—‘ସୀତାଙ୍କ ପରି ସତୀ ସାଧ୍ୱୀ, ସାଧୁଶୀଳା ଓ ସରଳହୃଦୟା ନାରୀ ତ୍ରିଭୁବନରେ ଆଉ କେହି ନାହିଁ ।’ ମୁନିଙ୍କ ପ୍ରସ୍ତାବରେ ଶ୍ରୀରାମ ସମ୍ମତ ହେଲେ । ବାଲ୍ମୀକି ଶିଷ୍ୟମାନଙ୍କୁ ପଠାଇ ଆଶ୍ରମରୁ ସୀତାଙ୍କୁ ଅଣାଇଲେ ।

ଅଯୋଧ୍ୟାରେ ଗୋଟିଏ ପ୍ରକାଣ୍ଡ ସଭା ଆହୂତ ହେଲା । ସେଥିରେ ରାଜପରିବାର, ନାନା ଦେଶର ନୃପତିଗଣ, କୋଶଳରାଜ୍ୟର ପ୍ରଧାନ ପ୍ରଧାନ ପ୍ରଜାଗଣ, ଅନ୍ୟାନ୍ୟ ଅନେକ ଲୋକ ସମବେତ ହେଲେ ।

ବାଲ୍ମୀକି ଉଠି ସଭାସ୍ଥ ଲୋକଙ୍କୁ କହିଲେ—"ଅମୂଳକ ଲୋକାପବାଦରେ ଚଳଚିତ୍ତ ହୋଇ ରାମଚନ୍ଦ୍ର ବିନା ଦୋଷରେ ସୁଶୀଳା ପତିପରାୟଣା ସୀତାଙ୍କୁ ପରିତ୍ୟାଗ କରିଥିଲେ । ଜାନକୀ ଯେ ସଂପୂର୍ଣ୍ଣ ସଚ୍ଚରିତ୍ରା ଏ ବିଷୟରେ କୌଣସି ସନ୍ଦେହ ନାହିଁ । ଅତଏବ ସୀତାଙ୍କୁ ଗ୍ରହଣ କରିବା ବିଷୟ ଅନୁମୋଦନ କରିବା ପାଇଁ ତୁମମାନଙ୍କୁ ଅନୁରୋଧ କରୁଅଛି ।"

ସଭାରେ ମହା କୋଳାହଳ ଉତ୍ଥିତ ହେଲା । ଉପସ୍ଥିତ ରାଜାମାନେ, ପ୍ରଧାନ ପ୍ରଧାନ ପ୍ରଜାମାନେ ଉଠି ପ୍ରସନ୍ନ ମୁଖରେ ଜଣାଇଲେ ଯେ, ରାମଚନ୍ଦ୍ର ଶୁଦ୍ଧଚରିତ୍ରା ଜାନକୀଙ୍କୁ ଗ୍ରହଣ କଲେ ସେମାନେ ଯଥପରୋନାସ୍ତି ପରିତୋଷ ଲାଭ କରିବେ । କିନ୍ତୁ ଅବଶିଷ୍ଟ ଲୋକେ ଅବନତ ମସ୍ତକରେ ତୁଷ୍ଣୀମ୍ଭାବ ଅବଲମ୍ବନ କରି ବସିଲେ । ରାମଚନ୍ଦ୍ର ସ୍ପଷ୍ଟରୂପେ ବୁଝିପାରିଲେ, ଜାନକୀ ପରିଗ୍ରହରେ ଅନେକ ଲୋକଙ୍କର ସମ୍ମତି ନାହିଁ । ସେ ହତବୁଦ୍ଧି ହୋଇ ନିତାନ୍ତ ମ୍ଳାନବଦନରେ ସ୍ଥିର ନୟନରେ ବାଲ୍ମୀକିଙ୍କ ମୁଖ ନିରୀକ୍ଷଣ କରି ରହିଲେ ।

ବାଲ୍ମୀକି ମୁନି ଅତ୍ୟନ୍ତ ହତୋତ୍ସାହ ହୋଇ ପଡ଼ିଲେ । ବୁଝିଲେ, ଜାନକୀଙ୍କ ଚରିତ୍ର ବିଷୟରେ ପ୍ରଜାଗଣଙ୍କର ସନ୍ଦେହ ଅଦ୍ୟାପି ଅପନୀତ ହୋଇ ନାହିଁ । ସମସ୍ତଙ୍କ ସମକ୍ଷରେ ପରୀକ୍ଷାରୂପ ପ୍ରତ୍ୟକ୍ଷ ପ୍ରମାଣ ଦେଖାଇ ସମସ୍ତଙ୍କ ହୃଦୟରୁ ସେହି ସଂଶୟ ଘୁଞ୍ଚାଇବା ନିମନ୍ତେ ସେ ସୀତାଙ୍କୁ ଅନୁରୋଧ କଲେ । ସୀତାଙ୍କର ବଡ଼ ଆଶା ଥିଲା, ରାମଚନ୍ଦ୍ର ତାହାଙ୍କୁ ଅବଶ୍ୟ ଗ୍ରହଣ କରିବେ । ଏହି ଆଶାର ଅଣ୍ଢାସନାଦାୟିନୀ ଶକ୍ତିରେ ତାଙ୍କ ମନରେ ଅମିତ ଫୂର୍ତ୍ତି ଓ ଉତ୍ସାହର ସଞ୍ଚାର ହୋଇଥିଲା । ସଭାସ୍ଥଳରେ ବାଲ୍ମୀକି ମୁନିଙ୍କର ଦକ୍ଷିଣ ଭାଗରେ ଠିଆ ହୋଇ ଜାନକୀ

ଅକୁଳ ପ୍ରାଣରେ ପରଗ୍ରହ ପ୍ରତୀକ୍ଷା କରୁଥିଲେ । ମୁନିଙ୍କର କଥା ଶୁଣି, ସେ ଅନ୍ତରକ୍ତ ଦୁଃଖ, ଲଜ୍ଜା ଓ ଅପମାନରେ, ପ୍ରଚଣ୍ଡ ବାତାହତ ଲତା ଭୁଳୀ ଭୂପତିତା ହୋଇ ମୂର୍ଚ୍ଛିତା ହେଲେ ।

ଜାନକୀଙ୍କର ଏ ଶୋଚନୀୟ ଦଶାରେ ଲବ୍ଧ୍ୱ ଓ କୁଶ ଅତୀବ କାତର ହୋଇ ଉଚ୍ଚ କଣ୍ଠରେ ରୋଦନ କରି ଉଠିଲେ । ଶ୍ରୀରାମ ସିଂହାସନରୁ ସଂଜ୍ଞା ହରାଇ ପଡ଼ିଲେ । ଶୋକବିହ୍ୱଳା କୌଶଲ୍ୟା ମୂର୍ଚ୍ଛା ପ୍ରାପ୍ତ ହେଲେ । ସୀତାଙ୍କର ଭଗିନୀଗଣ ବିଳାପ କରିବାକୁ ଲାଗିଲେ । ସଭାସ୍ଥ ସମସ୍ତ ଲୋକ ଏକାବେଳକେ ସ୍ତବ୍ଧ, ମର୍ମାହତ ! ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଶୋକାଭିଭୂତ ହେଲେହେଁ ଧୈର୍ଯ୍ୟ ଧରି ରାମଚନ୍ଦ୍ରଙ୍କର ସଂଜ୍ଞା-ସଂପାଦନରେ ତତ୍ପର ହେଲେ । କେତେକ କ୍ଷଣ ପରେ ଶ୍ରୀରାମଙ୍କର ଚୈତନ୍ୟଲାଭ ହେଲା । ବାଲ୍ମୀକିଙ୍କ ପ୍ରଯତ୍ନରେ ସୀତା ମଧ୍ୟ ଚେତନା ପାଇ ଉଠିଲେ ।

ସୀତାଙ୍କ ଅଶ୍ରୁଧାରାର ବିରାମ ନାହିଁ – ସେ ହୃଦୟ ଫଟାଇ କାନ୍ଦିଲେ । କାତର କଣ୍ଠରେ ମା ବସୁନ୍ଧରାଙ୍କୁ ଡାକିଲେ । ତାଙ୍କ ସମକ୍ଷରେ ପୃଥିବୀ ସହସା ବିଦୀର୍ଣ୍ଣ ହୋଇଗଲା । ସୀତା କଂପିତ କରରେ ଶ୍ରୀରାମଙ୍କୁ ପ୍ରଣିପାତ କରି ଧରାତଳର ସେଇ ଗହ୍ୱରରେ ପ୍ରବେଶ କଲେ, ଚିର କାଳ ପାଇଁ ଅନ୍ତର୍ଦ୍ଧାନ ହୋଇଗଲେ । ସମସ୍ତେ ହତବୁଦ୍ଧି ହୋଇ ଗଭୀର ବିଷାଦରେ ବୁଡ଼ିଗଲେ ।

ବାଲ୍ମୀକିଙ୍କର କାର୍ଯ୍ୟ ଶେଷ ହେଲା । ସେ ଅନେକ ବର୍ଷ ଗାଢ଼ ତପସ୍ୟାରେ ନିମଗ୍ନ ରହି ଦେହ ତ୍ୟାଗ କଲେ । ଭଗବାନ ଯେଉଁ ମହତ୍ ଉଦ୍ଦେଶ୍ୟରେ ବାଲ୍ମୀକିଙ୍କୁ ଜଗତକୁ ପ୍ରେରଣ କରିଥିଲେ, ସେଉଁ

ମହତ୍ କାର୍ଯ୍ୟପାଇଁ ତାଙ୍କ ଜୀବନ ଗଠିତ ଓ ପରିବର୍ତ୍ତିତ ହୋଇଥିଲା, ପ୍ରତିଭାସଂପନ୍ନ ବାଲ୍ମୀକି ସେହି ଉଦ୍ଦେଶ୍ୟ ସାଧନ କରି, ସେହି କାର୍ଯ୍ୟ ସଂପାଦନ କରି ଚିରଦିନ ପାଇଁ ସଂସାରରୁ ଚାଲି ଗଲେ — ନଶ୍ୱର ସଂସାରରେ ମର ଶରୀର, ଅମର ନାମ ଅମର କୀର୍ତ୍ତି ଛାଡ଼ି ଚାଲିଗଲେ । 'ବାଲ୍ମୀକି' ନାମ ଓ ରାମାୟଣପୁରାଣ ଭାରତକୁ, ସଂସ୍କୃତ ସାହିତ୍ୟକୁ ଅମର କରି ରଖିଛି, ଚିରଦିନ ରଖିବରି ରହିବ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ! ! !

[ ସମାପ୍ତ ]



ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା ବ୍ରହ୍ମପୁର ଷ୍ଟୋର ପ୍ରେସରେ ମୁଦ୍ରିତ ।